# ଆନନ୍ଦ ନଗରକୁ ଯାତ୍ରା

ରମେଶ ପାଣିଗ୍ରାହୀ

ପ୍ରକାଶକ :




ତରଙ୍ଗିଣୀ ପୁସ୍ତକାଳୟ
ବାରକସ୍, ବ୍ରହ୍ମପୁର-୧

# ଆନନ୍ଦ ନଗରକୁ ଯାତ୍ରା

ଲେଖକ :
ରମେଶ ପାଣିଗ୍ରାହୀ

ପ୍ରକାଶକ :
ଶ୍ରୀ ଭଗବାନ ପାଢ଼ୀ,
ତାରାତାରିଣୀ ପୁସ୍ତକାଳୟ,
ବାରାକ୍ସ, ବ୍ରହ୍ମପୁର-୭୬୦୦୦୧

ଦ୍ଵିତୀୟ ପ୍ରକାଶ : ୧୯୯୩

ମୁଦ୍ରଣ :
ମନମୋହନ ଟ୍ରେଡ଼ର୍ସ,
ବାଲାଜୀପେଣ୍ଠ ଲେନ୍, ବ୍ରହ୍ମପୁର-୨

ମୂଲ୍ୟ : ୧୨-୦୦ (ବାରଟଙ୍କା ମାତ୍ର)

**ANANDA NAGARAKU JATRA**

Author :
**Ramesh Panigrahy**

Published by :
**Sri Bhagaban Padhy,**
**TARATARINI PUSTAKALAYA,**
Barracks, Berhampur-760001

Second Edition : 1993

Printed at :
**MAN MOHAN TRADERS,**
Balaji Pentho Lane, Berhampur-2

Price :Rs. 12-00 (Rupees Twelve Only)

ପ୍ରଥମ ପରିବେଷଣ : ୧୯୭୬ :

ଚତୁର୍ଥ ଛାତ୍ରାବାସ—ସାମନ୍ତ ଚନ୍ଦ୍ରଶେଖର ମହାବିଦ୍ୟାଳୟ, ପୁରୀ

ନିର୍ଦ୍ଦେଶନା : ରମେଶ ପାଣିଗ୍ରାହୀ



ତନ୍ତ୍ରାମ କଳା ପରିଷଦ ଦ୍ୱାରା ଭବାନୀପାଟଣା ଠାରେ ଅନୁଷ୍ଠିତ ସଙ୍ଗୀତ ନାଟକ ଏକାଡେମୀ ଉତ୍ସବରେ ଅଭିନୀତ (୧୯୮୧)

ବିଶ୍ୱଜିତ୍—ସରୋଜପାଲ

ମୀନା—ଜ୍ୟୋତ୍ସ୍ନା

ଚନ୍ଦନ ପ୍ରହରାଜ—ରାମ ଦାଶ

ମେଘନାଦ ସାମନ୍ତ—ଡ଼ା. କୃଷ୍ଣ

ବୁଲ୍‌ବୁଲ୍—ଅଚ୍ୟୁତାନନ୍ଦ ପ୍ରହରାଜ

ଫଟିକ ଦାସ—ରଞ୍ଜୁ ପାଢ଼ୀ

ଘାସୀ ଗୁମାସ୍ତା—ବାଲକୃଷ୍ଣ ଦାଶ

ନିର୍ଦ୍ଦେଶନା : ଶ୍ରୀ ରାମଚନ୍ଦ୍ର ଦାଶ



ଆକାଶ ବାଣୀରେ (୧୯୮୪)

ବିଶ୍ୱଜିତ୍ : ଅଧ୍ୟାପକ ଶ୍ରୀ ହରିହର ମିଶ୍ର

ମୀନା : ଅଧ୍ୟାପିକା ମାଳବିକା ରାୟ

ଚନ୍ଦନ ପ୍ରହରାଜ : ଅମର ଚୌଧୁରୀ

ମେଘନାଦ ସାମନ୍ତ :

ବୁଲ୍‌ବୁଲ୍ : ଶ୍ରୀ ବ୍ରଜଚରଣ ଦାସ

ଫଟିକ ଦାସ : ଟିମା

ଗୁମାସ୍ତା : ଦୁର୍ଗାଚରଣ ଶତପଥୀ (ଧୋଇ)

ନିର୍ଦ୍ଦେଶନା : ଶ୍ରୀ ମନୋରଞ୍ଜନ ଦାସ

## ରମେଶ ପାଣିଗ୍ରାହୀଙ୍କ ଅନ୍ୟାନ୍ୟ ନାଟକ—

ମୁଁ, ଆମ୍ଭେ ଓ ଆମ୍ଭେମାନେ

ବିନ୍ଦୁ ଓ ବଳୟ

ଧୃତରାଷ୍ଟ୍ରର ଆଖି

ଜଣେ ମହାପୁରୁଷଙ୍କ ଜନ୍ମ ଓ ମୃତ୍ୟୁ ସମ୍ପର୍କରେ

ତମିର ତୃଷ୍ଣା

ଗୁଣ୍ଡା

ଆତ୍ମଲିପି

ପକ୍କା କମ୍ବଳ ପୋତ ଛତା

ମହାନାଟକ

ଶେଷ ପାହାଚ

ଅପ୍ରାତିଭଙ୍କର ନାଟକ

ଛଡ଼ନ୍ତା ପାହାଡର ଦର୍ଜା

ହାତୀକୁ ହୋମିଓପାଥି

ଦୁର୍ଘଟଣା ବଶତଃ

କମଳପୁର ଡାକଘର

# ପ୍ରାକ୍ କଥନୀ

## ( କ )

'ଆନନ୍ଦ ନଗରକୁ ଯାତ୍ରା' 'ଆମ୍ଳପି ନାଟକ ପରେ "କାଳିନ୍ଦୀ ନୃତ୍ୟନାଟ୍ୟ ସଂସଦ" (ପୁରୀ) ପାଇଁ ଲେଖାଯାଇଥିଲା । ସେତେବେଳେ ଏହାର ନାମ ଥିଲା 'ବନ୍ଦର' । ପ୍ରାୟ ମାସେ ରିହାରସାଲ୍ ପରେ କୌଣସି କାରଣରୁ ମଞ୍ଚସ୍ଥ କରିବା ସମ୍ଭବପର ହୋଇ-ପାରିଲା ନାହିଁ । ସେହିବର୍ଷ (୧୯୭୭) ମାର୍ଚ୍ଚ ମାସରେ ସାମନ୍ତ ଚନ୍ଦ୍ରଶେଖର ମହା-ବିଦ୍ୟାଳୟର ଚତୁର୍ଥ ଶ୍ରୁତାବାସରେ ଏହି ନାଟକଟି 'ବନ୍ଦର' ନାମରେ ମଞ୍ଚସ୍ଥ କରାଯାଇ-ଥିଲା । ଓଡ଼ିଶାର ପ୍ରଖ୍ୟାତ ଶିକ୍ଷାବିତ୍ ଓ ଦାର୍ଶନିକ ଡ଼. ସତ୍ୟବାଦୀ ମିଶ୍ରଙ୍କ ସମେତ ବହୁ ବୁଦ୍ଧିଜୀବୀ ଏହି ନାଟକ ଦେଖିସାରିଲା ପରେ ମତେ ପ୍ରଶ୍ନ କରିଥିଲେ : "ଏ ନାଟକର ନାୟକ/ନାୟିକା କ'ଣ ଏମିତି ଅପରାଧ କରିଥିଲେ ଯେ ଆପଣ ସେମାନଙ୍କୁ ବନ୍ଦର ଭିତରକୁ ପଠେଇଦେଲେ ?" ନାଟକ ଶେଷହେବାର କ୍ଳାନ୍ତି ଓ ସମୟର ଅଭାବ ଯୋଗୁଁ ମୁଁ ସେ ନୈତିକ ପ୍ରଶ୍ନର ଉତ୍ତର ଦେଇପାରିନଥିଲି ।

ତା' ପରେ ୧୯୮୦ ମସିହାରେ "ଲକ୍ଷ୍ମୀ କଳାପରିଷଦ", ବ୍ରହ୍ମପୁର ଏହି ନାଟକକୁ ଭବାନୀପାଟଣା ଠାରେ ମଞ୍ଚସ୍ଥ କରିଥିଲେ । ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଆନୁକୂଲ୍ୟରେ ଆୟୋଜିତ ଏକ ଉତ୍ସବରେ ଏହାର ମଞ୍ଚସଜ୍ଜା ଓ କଥନଶୈଳୀ ବାହାରକୁ ପାରମ୍ପରିକ ମନେହେଉଥିଲେ ମଧ୍ୟ ଏହା ଜଟିଳ ଯେ ତାକୁ ଭବାନୀପାଟଣାର ଦର୍ଶକ-ମାନଙ୍କ ଆଗରେ ସରଳ ଭାବରେ ବ୍ୟକ୍ତ କରିବା ସୁବିଧାଜନକ ହୋଇନଥିବ । ସେତିକବେଳେ ଏଇ ନାଟକର ନାଁ ଥିଲା "ଅପହଞ୍ଚ" । ମୁଁ ଯଦିଓ ପରିବେଷଣ ସମୟରେ ସେଠାରେ ଉପସ୍ଥିତ ନଥିଲି— ମୋର ଏବେ ବି ଧାରଣା "ଅପହଞ୍ଚ" ସାଧାରଣ ଦର୍ଶକଙ୍କ ପାଖରେ ପହଞ୍ଚିପାରିନଥିବ ।

ପୁଣି ଥରେ ୧୯୮୫ ମସିହାରେ ଆକାଶ ବାଣୀର ବାର୍ଷିକ ନାଟ୍ୟୋତ୍ସବ ପାଇଁ ଏହି ନାଟକ ମନୋନୀତ ହୋଇଥିଲା । ଏହାର ନାମ ରହିଲା "ଆନନ୍ଦ ନଗରକୁ ଯାତ୍ରା" ଏବଂ ନାଟକଟିର ନିର୍ଦ୍ଦେଶକ ଥିଲେ ଓଡ଼ିଶାର ସୁଖ୍ୟାତ ନାଟ୍ୟକାର ଶ୍ରୀ ମନୋରଞ୍ଜନ ଦାସ । ଏଥିରେ ଅଭିନୟ କରିଥିଲେ ମୋର ବହୁ ସାହିତ୍ୟିକ ବନ୍ଧୁ ଓ କଳାକାର— ନାଟ୍ୟକାର ଅଧ୍ୟାପକ ହରିହର ମିଶ୍ର, ନିର୍ଦ୍ଦେଶକ ଶ୍ରୀ ଦୁର୍ଗାଚରଣ ଶତପଥୀ ଓ ଅଧ୍ୟାପିକା ମାଳବିକା ରାୟ ପ୍ରଭୃତି । "ଆନନ୍ଦ ନଗରକୁ ଯାତ୍ରା" ବହୁବାର ଆକାଶବାଣୀ ମାଧ୍ୟମରେ ପ୍ରଚ୍ଚାରିତ ହୋଇଛି ଏବଂ ଏହାର୍ ସଫଳତା ସମ୍ପର୍କରେ ମୁଁ ଓଡ଼ିଶାର ବହୁ ଦର୍ଶକଙ୍କ ଠାରୁ ପତ୍ର ପାଇଛି । ଏ ଅବସରରେ ଓଡ଼ିଶାର ସେଇ ଦର୍ଶକ ଓ ଶ୍ରୋତାମାନଙ୍କୁ ଧନ୍ୟବାଦ ଜଣାଉଛି ।

ବର୍ତ୍ତମାନ ଏହାର ପ୍ରକାଶ କାଳରେ ଏହି ନାଟକର ପ୍ରଯୋଜନା ଓ ନିର୍ଦ୍ଦେଶନା ସହିତ ସମ୍ପୃକ୍ତ ବନ୍ଧୁମାନଙ୍କ ପାଖରେ କୃତଜ୍ଞତା ଜ୍ଞାପନ କରୁଛି । ଏହାର ଚେହେରାର ପରିବେଷଣ ପାଇଁ ବହୁ ପରିଶ୍ରମ କରିଥିଲେ ସହପରିଚାଳକ ଶ୍ରୀ ଗୋପବନ୍ଧୁ ଚୌଧୁରୀ । ମୋ' ଘରକୁ ଦଶଥର ଦୌଡ଼ି, ନାଟକ ଲେଖେଇବାଠୁ ଆରମ୍ଭ କରି ଇଂରେଜୀ ଅନୁବାଦ ପର୍ଯ୍ୟନ୍ତ ସବୁ କାମରେ ତାଙ୍କର ତାଗିଦା ନ ମିଳିଥିଲେ ମୋ' ପକ୍ଷରେ ଏହାର କାର୍ଯ୍ୟ ସମ୍ପୂର୍ଣ୍ଣ କରିବା ସମ୍ଭବପର ହୋଇନଥାନ୍ତା । ଶେଷରେ ଏହି ନାଟକକୁ ପ୍ରକାଶ କରିବା ପାଇଁ ମୋ' ସାନଭାଇ ଡ଼.ସୁରେଶଚନ୍ଦ୍ର ପାଣିଗ୍ରାହୀ ଓ ପ୍ରକାଶକ ବନ୍ଧୁ ଶ୍ରୀ ଭଗବାନ ପାତ୍ରୀଙ୍କ ଉଦ୍ୟମ ମୋ' ପାଇଁ ସ୍ମରଣୀୟ ରହିବ । ଏ ନାଟକର ବିଭିନ୍ନ ପର୍ଯ୍ୟାୟରେ ଇଂରେଜୀ ଅନୁବାଦ କଲାବେଳେ ବନ୍ଧୁ ଅଧ୍ୟାପକ ତପନ ପଟ୍ଟନାୟକଙ୍କର ସାହାଯ୍ୟ ମୁଁ ଭୁଲି ପାରିବନି ।

( ଖ )

ଚିତ୍ର ଆଙ୍କି ଜାଣିନଥିବା ଲୋକଟିଏ କାଉର ଚିତ୍ର ଆଙ୍କି ତା' ତଳେ "କାଉ" ବୋଲି ଲେଖିବା ଯାହା—ନିଜ ନାଟକ ପାଇଁ ଗୋଟିଏ ମୁଖବନ୍ଧ ଲେଖିବା ତାହା । ନିଜକୁ ଅତି ଉଚ୍ଚ ରୁଚିସମ୍ପନ୍ନ ସାହିତ୍ୟିକ ବୋଲି ମନେ କରୁଥିବା କେତେଜଣ ନିଜ ଲେଖାପାଇଁ ମୁଖବନ୍ଧ ଲେଖିବା ଲୋକଙ୍କୁ ଆତ୍ମ-ପ୍ରଚାରକ ବୋଲି କୁହନ୍ତି ଓ ଅନ୍ୟାନ୍ୟ ଗଣ୍ୟଙ୍କ ଲେଖାରେ ମୁଖବନ୍ଧ ନଥିବା ଉଦାହରଣ ଦେଖାଇଥାନ୍ତି । ଅନ୍ୟାନ୍ୟ ଭାଷାର ଅର୍ଥ ବଙ୍ଗଳା ଓ ହେଉ ହେଉ ଅତିବେଶୀ ହେଲେ ହିନ୍ଦୀ । କାରଣ ପ୍ରଥମତଃ ଓଡ଼ିଶାରେ କେହି ପଢ଼ନ୍ତିନାହିଁ ଓ ଲେଖାଲେଖି କରି ପ୍ରତିଷ୍ଠା ପାଇବା, ବ୍ୟାପାର ତିଆରି କରିବା ଏଇ ପ୍ରାଣୀ ବିଶେଷମାନେ ଅନ୍ୟ କୌଣସି ଭାଷା ଜାଣନ୍ତି ନାହିଁ । ତେଣୁ ଏମାନଙ୍କ କଥାର କୌଣସି ମୂଲ୍ୟ ନାହିଁ । ଫଳେ ଆତ୍ମପ୍ରଚାରକଙ୍କ ଛଡ଼ା ଏ ଦେଶରେ ପ୍ରାୟ କେହି ସାହିତ୍ୟିକ ନାହାଁନ୍ତି । ଆଜି କାଲି ପଇସା ଥିଲେ ବିଜ୍ଞାପନ ଦେବା ଦରକାର ହୁଏ ନାହିଁ । ଜରଦ୍‌ଗବ ସମାଲୋଚକ ବା ଓଡ଼ିଆ ସାହିତ୍ୟର ବିଭିନ୍ନ ପୁରସ୍କାର ମିଳୁଥିବା କୋଠାର ଜଗୁଆଳ/ଦରୁଆନ୍‌ମାନଙ୍କ ଖାକି ଗଦଡ଼ି ଟୋପି ଭିତରେ କିଛି ମାଲ୍ ଗଳେଇ ଦେଲେ ଗଣତାନ୍ତ୍ରିକ ପଦ୍ଧତିରେ ଜଣେ ସାହିତ୍ୟିକର ନାଁ ସେ କୌଣସି ପୁରସ୍କାର ପାଇଁ ନିର୍ବାଚନ ତାଲିକାକୁ ଖୁବ୍ ଯାଇପାରେ ଏବଂ ସେ ପୁରସ୍କାର ପାଇଯାଇପାରେ । ସେଥିରେ ପୁଣି ଜଗୁଆଳ- ମାନଙ୍କ ନାମ ପ୍ରାୟ ନିର୍ଦ୍ଦିଷ୍ଟ । ଏହା ଏକ ନୂତନ ସଂସ୍କୃତି ଓ ନୂତନ ସାହିତ୍ୟିକ ପରଂପରା । ନାଟକର ଅବସ୍ଥା ଅଧିକ ଶୋଚନୀୟ ।

ଓଡ଼ିଆ ନାଟକ ନାମରେ ଯେଉଁ ସାହିତ୍ୟ ସୃଷ୍ଟି ହେଉଛି ତା'ର କୌଣସି ସାହିତ୍ୟିକ ସମାଲୋଚନା କରାଯାଉ ନାହିଁ । ତା'ର ପ୍ରଥମ କାରଣ ଓଡ଼ିଶାରେ ନାଟ୍ୟ ସମାଲୋଚକ ନାହାଁନ୍ତି । ଏଠାରେ କେବଳ ଯାତ୍ରା ଓ ଅନ୍ନପୂର୍ଣ୍ଣା ଥିଏଟର୍‌କୁ

ଛାଡ଼ି ଅନ୍ୟ ନାଟକ ହୁଏନାହିଁ । ଯାହାହୁଏ ତାକୁ ପାଞ୍ଚଶହରୁ ଅଧିକା ଲୋକ ଦେଖନ୍ତି ନାହିଁ । ଯେଉଁ ନାଟକ ସବୁ ପ୍ରକାଶିତ ହୁଏ ତା'ର ପାଠକ ନାହାନ୍ତି । ନାଟକଟିଏ ମଞ୍ଚସ୍ଥ ହେଲେ କିଏଥିରେ କେଉଁ ପ୍ରକାର ପରୀକ୍ଷା କରାଗଲା ଓ ତା'ର ଆନ୍ତର୍ଜାତିକ ମୂଲ୍ୟ କେତେ ତାହା ନିର୍ଣ୍ଣୟ କରିବା ପାଇଁ ଆମ ସମାଲୋଚକମାନଙ୍କର ଆଖିନାହିଁ । ଶେଷରେ ଏତିକି କହିଲେ ଯଥେଷ୍ଟ ହେବ ଯେ ଓଡ଼ିଶାରେ ୧୯୮୭ ମସିହା ବେଳକୁ ପ୍ରାୟ କେହି ନାଟ୍ୟକାର ନାହାନ୍ତି । ଯେଉଁ ତିନି/ଚାରି ଜଣ ଲେଖୁଛନ୍ତି ସେମାନଙ୍କ ନାଟକ ଗୁଡ଼ିକର ସ୍ୱକୀୟ ମୂଲ୍ୟ ବା ତ୍ରୁଟି ସମ୍ପର୍କରେ କହିବା ଲୋକ ମଧ୍ୟ ଏଠାରେ ନାହାନ୍ତି । ଏହା ଏଠି ଅନ୍ଧମାନଙ୍କର ସଂସ୍କୃତି ।

ଏହି ପରିପ୍ରେକ୍ଷୀରେ ଏ ଦେଶରେ ଯେଉଁ ଭବିଷ୍ୟତର ପାଠକ ସୃଷ୍ଟି ହେବେ ସେମାନଙ୍କ ପାଇଁ ଏ ମୁଖବନ୍ଧ ଲେଖୁଛି । ଆମର କାମଳାବେଗୀ ସମାଲୋଚକମାନଙ୍କ ହାଲଢଆ ଉକ୍ତିମାନଙ୍କ ଦ୍ୱାରା ସେମାନେ ଯେପରି ପ୍ରଭାବିତ ନ ହୁଅନ୍ତି, ସେଥିପାଇଁ ଏ ମୁଖବନ୍ଧ ଲେଖାଯାଉଛି ବୋଲି ଯୁକ୍ତି କରାଯାଇପାରେ ।

କୋଉ ଦଶବର୍ଷ ତଳେ ଲେଖିଥିବା ନିଜ ନାଟକଟିକୁ ବର୍ତ୍ତମାନ ପଢ଼ିଲା-ବେଳେ ତାହା ଆଉ ନିଜ ନାଟକ ବୋଲି ମନେହେଉନାହିଁ । କାରଣ ଦଶବର୍ଷ ତଳର ସେ ଲେଖକ ମଧ୍ୟ ଆଜି ରୂପାନ୍ତରିତ ହୋଇଯାଇଛି । ତେବେ ଯେତେଦୂର ମନେପଡ଼ୁଛି ଆନନ୍ଦର ଉପନିବେଶ ଖୋଜୁଥିବା ଦୁଇଟି ପକ୍ଷୀ କେମିତି ବାଗ ହରେଇ ଅନ୍ଧାର ଭିତରେ ହଜିଯାଇଛନ୍ତି—ତାହା ଏ ନାଟକର ପ୍ରଥମ ଚିନ୍ତା । ଏହାର ପ୍ରକାଶ ଶୈଳୀଟି କିନ୍ତୁ ରହସ୍ୟ ରୋମାଞ୍ଚଭରା ଏକ ଡିଟେକ୍ଟିଭ୍ ନାଟକର ଶୈଳୀ । ଆଧୁନିକ ସାହିତ୍ୟ-ତତ୍ତ୍ୱ ଅନୁଯାୟୀ ଉଭୟ କଥାବସ୍ତୁ ଓ ଉପସ୍ଥାପନା ଦୃଷ୍ଟିରୁ ଏହା ଆଉ ଏକ ପ୍ରକାରର 'ଫ୍ୟାଣ୍ଟାସୀ' ବା ଅତିକଳ୍ପନା । ଅତଏବ ନାଟକ ବିଷୟରେ ଜାଣିବା ପୂର୍ବରୁ 'ଫ୍ୟାଣ୍ଟାସୀ' ନାମକ ଏହି ସାହିତ୍ୟିକ ବିଭାଗ ସମ୍ପର୍କରେ କିଛି ବୁଝାଯିବା ଉଚିତ ଏବଂ ରହସ୍ୟ ରୋମାଞ୍ଚ ଶୈଳୀଟି କିପରି ଫ୍ୟାଣ୍ଟାସୀ ସହିତ ସମ୍ପୃକ୍ତ ସେ ବିଷୟରେ ମଧ୍ୟ ସାମାନ୍ୟ ଆଲୋକପାତ କରାଯିବା ଉଚିତ । ମୋର ଧାରଣା 'ଆନନ୍ଦ ନଗରକୁ ଯାତ୍ରା' କୁ ଏକ ସାହିତ୍ୟ କୃତିରୂପେ ଆଲୋଚନା କରିବା ପୂର୍ବରୁ ତା'ର ସୃଷ୍ଟିର ପୂର୍ବାବସ୍ଥାରେ ଯେଉଁ ଅତିକଳ୍ପନାଟି ନିହିତ ତାହାହିଁ ଏଠାରେ ଅର୍ଥପୂର୍ଣ୍ଣ । "ଆମିନଦାବ୍" (Aminadab) ନାମକ କାଫ୍‌କାଙ୍କ ଶୈଳୀରେ ଲିଖିତ ଫ୍ୟାଣ୍ଟାସୀ ପୁସ୍ତକର ରଚୟିତା Maurice Blanchot କହନ୍ତି "the quest of literature is the quest for the moment which precedes it."

ଏ ନାଟକ ଦେଖିଲାବେଳେ ପ୍ରତ୍ୟେକ ମୁହୂର୍ତ୍ତରେ ମନେହେବ ସତେ ଯେମିତି 'ଆନନ୍ଦ'ର ଗୋଟିଏ ଫଙ୍କା ମିଳିଯିବ । ସତେ ଯେମିତି ନାୟକ ନାୟିକା ଗୋଟିଏ ନିର୍ଭରଯୋଗ୍ୟ ଅର୍ଥ ପାଖରେ ପହଞ୍ଚିଯିବେ । କିନ୍ତୁ ଅପର ମୁହୂର୍ତ୍ତରେ ମନେହେବ ସବୁ

ସେମିତି ଅର୍ଥଶୂନ୍ୟ । ହଠାତ୍ ପରିଚିତ ଲାଗୁଥିବା ପୃଥିବୀଟା ସେମିତି ଅପରିଚିତ ହୋଇଯାଉଛି । ବୁଝିହେଲା ଭଳି ଲାଗୁଥିବା ମାନସିକ ସ୍ଥିତିଗୁଡ଼ାକ ସେମିତି ହଠାତ୍ ଦୁର୍ବୋଧ ହୋଇଯାଉଛନ୍ତି । କୁଆଡ଼ୁ ଆସିଲା ବୁଲ୍ ବୁଲ୍ ଚରିତ୍ର ? କୁଆଡ଼ୁ ଆସିଲା ମୂଷାଟା ଆଉ ହଠାତ୍ ପଶିଗଲା ତା' ପେଟ ଭିତରେ ? କିଏ ସେଇ ଚନ୍ଦନ ପ୍ରହରାଜ ଅ-ଶୂନ୍ୟତାକୁ ସମୁଦ୍ର ମନେକରି ସିଏ ଛାନ୍ଦିକି ଜାଲ ପକାଉଥିଲେ ? ମେଘନାଦ ସାମନ୍ତ କେମିତି ଜାଣିଲେ ମୀନା ଓ ବିଶ୍ୱଜିତ୍ ଭିତରେ ଥିବା ସେଇ ଭୟକୁ ? ଭୟ ସହିତ ଆନନ୍ଦର ସମ୍ପର୍କ କେତେ ନିବିଡ଼ ? ଏସବୁ ପ୍ରଶ୍ନର ସହଜ ଉତ୍ତରଦେବା କଷ୍ଟକର । ପ୍ରତ୍ୟେକ 'ଫ୍ୟାଣ୍ଟାସୀ' ଗୋଟିଏ ନିର୍ଦ୍ଧାରିତ 'ସତ୍ୟ' ବା ଅର୍ଥର ସୀମାରେଖା ଉପରେ ଝୁଲୁଥିଲା ଭଳି ଦେଖାଯାଆନ୍ତି । ଏପଟକୁ ଆସିଲେ ବାସ୍ତବ ସତ୍ୟ ଓ ଆରପଟକୁ ଗଲେ କଳ୍ପନା । ଏପଟକୁ ଆସିଲେ ଅର୍ଥ ଓ ଅନ୍ୟପଟକୁ ଗଲେ ଉଦ୍ଭଟ । "ଆନନ୍ଦ ନଗରକୁ ଯାତ୍ରା" ମଧ୍ୟ ସେହିପରି । 'ଆନନ୍ଦ', 'ଆନନ୍ଦ ନଗର' ଓ 'ଯାତ୍ରା'-ପ୍ରତ୍ୟେକ ସ୍ତରରେ ବାସ୍ତବ ଓ ଅବାସ୍ତବର ମିଶ୍ରଣ, ଏପରି ଏକ ଛନ୍ନସ୍ଥାଚ୍ଛନ୍ନ ଅବସ୍ଥାରେ ଆଧୁନିକ ଫ୍ୟାଣ୍ଟାସୀ ଜେମ୍‌ସନ୍‌ଙ୍କ ଭାଷାରେ an object world for ever suspended on the point of meaning, for ever disposed to receive a revelation, whether of evil or of grace, that never takes place." ( Frederic Jameson, The Prison-House of Language, A critical account of Structuralism and Russian Formalism—p. 146)

ବିଶ୍ୱଜିତ୍ ଓ ମୀନାଙ୍କର ଆନନ୍ଦ ଖୋଜା ଅଦ୍ଭୁତ, ବିଚିତ୍ର ବା କାଳ୍ପନିକର ଊର୍ଦ୍ଧ୍ୱରେ । ଏହାର ବାସ୍ତବୋତ୍ତର ବାସ୍ତବତାକୁ ଦୈବିକ ବା ମ୍ୟାଜିକ୍ ପୃଥିବୀର ଅନୁଭୂତି ବୋଲି କୁହାଯାଇ ନପାରେ । ଯେତେକ ଅତିକଳ୍ପନା ମିଳୁଛି ସେଇତକ ନାଟକ ଆରମ୍ଭ ଆଗରୁ ଆମ ଭିତରେ ଅଛି ବୋଲି ଧରିନିଆଯାଇପାରେ, ଆମ ଅସ୍ତିତ୍ୱର ଏହା ସେପରି ଏକ ଅନିବାର୍ଯ୍ୟ ଅବସ୍ଥା । କାଫ୍‌କା କିଂବା ଇଟାଲୋ କାଲ୍‌ଭିନୋଙ୍କ ଉପନ୍ୟାସରେ ବାସ୍ତବ ସତ୍ୟ ଓ ନିର୍ଦ୍ଦିଷ୍ଟ ଅର୍ଥଟି ଅସମ୍ଭବ ବୋଲି ଜଣାଇଦିଆଯାଇ ଥାଏ ।

ବିଶ୍ୱଜିତ୍ ଓ ମୀନା ଆନନ୍ଦର ଅର୍ଥ ଖୋଜି ଖୋଜି ଯେଉଁଠିକି ବାଟ ଆଗେଇ ଚାଲିଛନ୍ତି 'ଏଣ୍ଟ୍ରୋପି' ତାଙ୍କୁ ମେଘନାଦ ସାମନ୍ତ ଭଳି ସେଠିକି ଗୋଡ଼େଇ ଚାଲିଛି । ଶେଷରେ ପ୍ରାପ୍ତି ହେଉ ବା ଧ୍ୱଂସ ଭିତରେ ହେଉ, ଅନ୍ୟ ଏକ ପୃଥିବୀର ସମ୍ଭାବନା ଅଛି । ପାହାଲ ପାହାଲ ଗଡ଼ର ଖବର ଅଛି—ସେଇ କେନ୍ଦ୍ରରେ । "କେନ୍ଦ୍ରଟି କ'ଣ ?" —ଏଇତକ ବୁଝିବା ଭିତରେ ନାଟକର ସବୁକିଛି ରହିଗଲା ବୋଧହୁଏ ।

ରେଭେନ୍‌ସା ମହାବିଦ୍ୟାଳୟ,
କଟକ

।। ରମେଶ ପାଣିଗ୍ରାହୀ ।।

# ଦ୍ୱିତୀୟ ସଂସ୍କରଣ ପାଇଁ

'ଆନନ୍ଦ ନଗରକୁ ଯାତ୍ରା'ର ଦ୍ୱିତୀୟ ସଂସ୍କରଣ ପ୍ରକାଶ ପାଇବା ଏକ ସୁସମ୍ବାଦ । କଟକ ପୁସ୍ତକ ବଜାର ବାଲା କିନ୍ତୁ କୁହନ୍ତି ଓଡ଼ିଶାରେ ରଙ୍ଗମଞ୍ଚର ଅବକ୍ଷୟ ଅବସ୍ଥାରେ ନାଟକର ଆଉ ଚାହିଦା ନାହିଁ ଏବଂ ନାଟକର ଆଉ ବିକ୍ରି ବନ୍ଦ ଭଳି । ଯାହାର ଅର୍ଥ ହେଲା ଏଣିକି ନାଟକ ବହି ଛପିବା ପାଇଁ ନାଟ୍ୟକାରଙ୍କୁ କିଛି ଅର୍ଥ ବିନିଯୋଗ କରିବାକୁ ପଡ଼ିବ । ଏବେ ନାଟକଟି ଯଦି କାହାଣୀ ପ୍ରଧାନ ହେଲା ତା' ହେଲେ ପ୍ରକାଶକ ଘରକୁ ଆସି ଏକା ସାଙ୍ଗରେ ଅଢ଼େଇରୁ ପାଞ୍ଚହଜାର ପର୍ଯ୍ୟନ୍ତ ଅଗ୍ରୀମ ଦେଇ ନାଟକ ଛାପିବାକୁ ନେଉଛନ୍ତି । ଏଥିରୁ ଓଡ଼ିଆ ନାଟକର ସ୍ପଷ୍ଟରୂପ ମିଳୁନାହିଁ ।

ଇତି ମଧ୍ୟରେ ଏହି ନାଟକଟି ସମ୍ବଲପୁର ବିଶ୍ୱବିଦ୍ୟାଳୟର ପାଠ୍ୟକ୍ରମ ପାଇଁ ଅନୁମୋଦିତ ହେବା ଆନନ୍ଦର ବିଷୟ କିନ୍ତୁ ଗତ ସାତ ବର୍ଷ ଭିତରେ ଓଡ଼ିଶାର କୌଣସି ନାଟ୍ୟ ସମାଲୋଚକ ଏ ନାଟକ ସମ୍ପର୍କରେ ଧାଡ଼ିଏ ସୁଦ୍ଧା ଲେଖି ନାହାନ୍ତି । ମୋର ମନେହୁଏ ଗୋଟାଏ ପଟେ କବି ଓ ଗାଳ୍ପିକ ମାନେ ନାଟକକୁ ଦ୍ୱିତୀୟ ବା ତୃତୀୟ ଶ୍ରେଣୀର ସାହିତ୍ୟ ବୋଲି ମନେ କରୁବେଳେ ସମାଲୋଚକ ମାନେ ନାଟକ ପଢ଼ି ସେଥିରୁ କିଛି ବୁଝି ପାରୁନାହାନ୍ତି ।

(ଏହାର କାରଣ ହେଲା ଏହି ନାଟକ ଆଧୁନିକ ନାଟକ ନୁହେଁ, ଏହା ଆଧୁନିକୋତ୍ତର ପର୍ଯ୍ୟାୟର । ଯାଗ ବିଶ୍ୱ ସାହିତ୍ୟରେ ଆଧୁନିକ ଯୁଗ ପରେ ଗତ ତିରିଶ ବର୍ଷ ହେଲା ଯେଉଁ ଆଧୁନିକୋତ୍ତର ସାହିତ୍ୟର ସମୟ ଆସିଛି ଏହା ସେହି ପର୍ଯ୍ୟାୟର । ଏହି ନାଟକର ସବୁ କିଛି ବୁଝା ପଡ଼ିଗଲା ଭଳି ମନେ ହେଉଥିଲେ ସୁଦ୍ଧା ଅନେକ କିଛି ଦୁର୍ବୋଧ ରହିଯିବାର ସମ୍ଭାବନା ରହିଛି । "ଆନନ୍ଦ ଅନ୍ୱେଷଣ" ଏହାର ମୁଖ୍ୟ କଥାବସ୍ତୁ ହୋଇଥିଲେ ସୁଦ୍ଧା ଏହାକୁ ଏକ ରହସ୍ୟ ରୋମାଞ୍ଚ କଥନ ଶୈଳୀରେ କାହିଁକି ଲେଖାଯାଇ ଅଛି ଏବଂ ଏହାଦ୍ୱାରା ଏହା କିପରି ଆଧୁନିକ ମାନସିକତାରୁ ଉତ୍ତୀର୍ଣ୍ଣ ହୋଇ ଆଧୁନିକୋତ୍ତର ପର୍ଯ୍ୟାୟକୁ ଚାଲିଯାଇ ପାରୁଛି ତାହା ଅନୁଧ୍ୟାନ କରିବା ପାଇଁ ସମୟ ଆବଶ୍ୟକ ।)

ଅତି ଜଣାଶୁଣା ଗୋଟିଏ ପର୍ଯ୍ୟଟକ ସହରର ପରିଚିତ ପରିବେଶର ବାସ୍ତବତା ଉପରେ ଅତିକଳ୍ପନାର ପୁଟ ପାଇ ଅପରିଚିତ ରହସ୍ୟରେ ପରିଣତ ହୋଇ ଯାଉଛି ତାହା ଲକ୍ଷ୍ୟ କରିବାର କଥା । ବାସ୍ତବତାର ସୀମାରେଖା ଗୁଡ଼ିକୁ ବାସ୍ତବବାଦୀ ଶୈଳୀରେ କିପରି ଉଲଂଘନ କରିହୋଇ ପାରେ ଏହା ଏହି ନାଟକରେ ଦର୍ଶାଇ

ଦିଆ ଯାଇଅଛି । ଏପରିକି ଏହି ନାଟକରେ ବ୍ରେଚ୍‌ଟଙ୍କ ଶୈଳୀର Alienation Effect ପାଇଁ ସଙ୍ଗୀତ ମଧ୍ୟ ବ୍ୟବହାର କରାଯାଇଅଛି । ମଝିରେ ମଝିରେ ଫକିରଦାସ ଆସି ଟିକଟ ବିକ୍ରୀ କଲା ପରେ ମଧ୍ୟ ନାଟକର ବାସ୍ତବବାଦୀ ସୀମାରେଖା ଗୁଡ଼ିକ ପୁନଶ୍ଚ ଭାଙ୍ଗିବା ଆରମ୍ଭ ହୋଇଛି । କିମ୍ବା ଫକିର ଦାସଙ୍କର ନନ୍ଦନକାନନକୁ ଅଗ୍ରୀମ ଟିକଟ ବିକ୍ରୀ ପର୍ଯ୍ୟାୟଟି ସଙ୍ଗୀତ ଭଳି ଚଳନ୍ତି ଘଟଣା ପ୍ରବାହ ଭିତରେ ଗୋଟାଏ ପୂର୍ଣ୍ଣଚ୍ଛେଦ ଟାଣି ଅନ୍ୟ ଏକ ପର୍ଯ୍ୟାୟକୁ ଉନ୍ନୀତ ହୋଇଯାଇ ପାରୁଛି । ଏହି ସବୁ ସଂରଚନା ଶୈଳୀ ପ୍ରତି ଦୃଷ୍ଟି ନ ଦେଲେ ଏହି ନାଟକର ଶିଳ୍ପ ସମ୍ପର୍କରେ ବୁଝି ହେବ ନାହିଁ । ଗୋଟିଏ ନୂତନ କାବ୍ୟିକ କଥାବସ୍ତୁ କିପରି ଏକ ସ୍ୱତନ୍ତ୍ର ଶିଳ୍ପଶୈଳୀକୁ ଜନ୍ମ ଦିଏ ତାହା ନାଟକର ଏହି ଛୋଟ ଛୋଟ ବର୍ଣ୍ଣନା ଶୈଳୀ ଗୁଡ଼ିକ ପ୍ରତି ନଜର ନ ଦେଲେ ସହଜରେ ବୁଝି ହେବ ନାହିଁ ।

ମନୋରଞ୍ଜନ ଦାସ କିମ୍ବା ବିଜୟ ମିଶ୍ରଙ୍କ ନାଟକ ଗୁଡ଼ିକୁ ଅନୁଧ୍ୟାନ କଲେ ବିଶ୍ୱସାହିତ୍ୟର ଆଧୁନିକତା ସମ୍ପର୍କରେ ଏକ ସମ୍ୟକ ଅବଧାରଣା କରିହୁଏ । କିନ୍ତୁ ସମଗ୍ର ବିଶ୍ୱର ଭେଦବାଦୀ ଚେତନା ପରମ୍ପରାର ଊର୍ଦ୍ଧ୍ୱରେ ଆଉ ଏକ ସହଜ ସମୀକରଣ ଧର୍ମୀ ଆଧୁନିକୋତ୍ତର ସାହିତ୍ୟ ଯେ ସୃଷ୍ଟି ହୋଇସାରିଛି ତାହା ଏହି ନାଟକର ଶିଳ୍ପଶୈଳୀକୁ ଅନୁଧ୍ୟାନ ନକଲେ ଜାଣି ହେବ ନାହିଁ । ଅଥଚ ମୁଁ ଏହି ନାଟକର କଥାବସ୍ତୁକୁ ଭାରତୀୟ ପରମ୍ପରା ଭିତରୁ ନେଇଛି ଏବଂ ନାଟକର ଶୀର୍ଷବିନ୍ଦୁରେ ଏହା ପ୍ରାଚ୍ୟ ଯୋଗର ତୁରୀୟ ଅବସ୍ଥାକୁ ଛୁଇଁବାର ଚେଷ୍ଟା କରିଛି । ଏକ ସମ୍ପୂର୍ଣ୍ଣ ଅନ୍ତସ୍ଥ ଅନୁଭୂତିକୁ ସଂଳାପ ମାଧ୍ୟମରେ କିପରି ଏକ ବହିସ୍ଥ ମଞ୍ଚକଳାରେ ପରିଣତ କରାଯାଇ-ପାରେ ତାହାର ଏକ ଦୃଷ୍ଟାନ୍ତ ଏହି ନାଟକରୁ ମିଳିବାର ସମ୍ଭାବନା ରହିଛି ବୋଲି ମୋର ବିଶ୍ୱାସ ।

ଢେଙ୍କାନାଳ
ଶୁଭ ଶୁକ୍ରବାର

ରମେଶ ପାଣିଗ୍ରାହୀ

# ଆନନ୍ଦ ନଗରକୁ ଯାତ୍ରା

[ ଏ ନାଟକଟିରେ ସମ୍ପୂର୍ଣ୍ଣ ମୁକ୍ତଧାରାର ମଞ୍ଚ-ଶୈଳୀ ବ୍ୟବହାର କରାଯାଇପାରିବ । ଦରକାର ପଡ଼ିଲେ ଏହା ଯାତ୍ରା ଶୈଳୀରେ ଶୂନ୍ୟ ମଞ୍ଚରେ ଅଭିନୀତ ହୋଇପାରିବ । ନିର୍ଦ୍ଦେଶକ ଯଦି କୁଶିଳବଙ୍କର ଆନନ୍ଦ ଅନ୍ୱେଷଣର ଏକ ଆଭ୍ୟନ୍ତରୀଣ ଚିତ୍ର ପ୍ରଦାନ କରିବାକୁ ଚାହାନ୍ତି ତା'ହେଲେ ପ୍ରସେନିୟମ ମଞ୍ଚ ବ୍ୟବହାର କରିପାରନ୍ତି । ନିର୍ଦ୍ଦେଶକ ଯଦି କୌଣସି ନିର୍ଦ୍ଦିଷ୍ଟ ସ୍ଥାନରେ ଅନୁକୃତ ବା Mimetic-space ବ୍ୟବହାର କରିବାକୁ ଚାହାନ୍ତି ତା'ହେଲେ ନିମ୍ନଲିଖିତ ଛ'ଗୋଟି ସ୍ଥାନର ଅବତାରଣା କରିବେ :

୧) ସୌରଜଗତ ବା ମହାଶୂନ୍ୟ ବା କୁଶିଳବଙ୍କର ଚେତନାର ସ୍ତର ।

୨) ସମୁଦ୍ର ଓ ସମୁଦ୍ରର ଅନୁଭୂତି ।

୩) କାଳ୍ପନିକ ଆନନ୍ଦ ନଗର ଷ୍ଟେସନ ।

୪) ଏକ ଅନ୍ତଃସ୍ଥାନ କୃତ୍ରିମ ସଡ଼କ ।

୫) ଯନ୍ତ୍ରଣା କୋଠରୀ ବା ମେଘନାଦ ସାମନ୍ତଙ୍କର 'ଆନନ୍ଦ ନିଳୟ' ।

ଏବଂ

୬) ଗୋଟିଏ ବିବର :

ପୃଥିବୀ ପୃଷ୍ଠରୁ ଭୂ-କେନ୍ଦ୍ର ପର୍ଯ୍ୟନ୍ତ

ବା

ବାହ୍ୟ ଚେତନାରୁ ଅ-ଚେତନାର ଅନ୍ତିମ ବିନ୍ଦୁ ପର୍ଯ୍ୟନ୍ତ । ଅନ୍ୟ ଭାଷାରେ ଚେତନାର

କେନ୍ଦ୍ର ବିନ୍ଦୁରୁ ବାହ୍ୟ ଚେତନା ପର୍ଯ୍ୟନ୍ତ ସେଉଁ ନର୍ଦ୍ଦେଶିତ ସ୍ଥାନର ଅନୁକ୍ରମରେ ବିଶ୍ୱାସ କରନ୍ତି ନାହିଁ ଓ ମଞ୍ଚଟିକୁ Anti-mimetic space ବା ବିଶୁଦ୍ଧ ଅଭିନୟ ଇଲାକା ଭାବରେ ଗ୍ରହଣ କରନ୍ତି ସେମାନେ ସେହିକାଳ ପରିବେଷଣ ଶୈଳୀ ବ୍ୟବହାର କରିବେ ।

ମଞ୍ଚ ଉପରକୁ ଆଲୋକ ଆସିବା ମାତ୍ରେ ପ୍ରବେଶ କଲେ ଫଟିକ ଦାସ—କୌଣସି ନାମଜାଦା ଟ୍ରାନସ୍‌ପୋର୍ଟ କଂପାନୀର ଟିକଟ କ୍ୟାନଭାସର୍ :]

ଫଟିକ ॥ ଟିକେଟ୍...ଟିକେଟ୍ ..ଅଡ୍‌ଭାନ୍‌ସ ଟିକେଟ ! ନନ୍ଦନ କାନନ ପାଇଁ ଆଡ୍‌ଭାନ୍‌ସ୍ ଟିକେଟ । ଆଜିଠୁ ନନ୍ଦନ କାନନ ପାଉଡ଼ିଲନ୍...ଗଡ଼ି ପାହିଲେ ବହି ଛାଡ଼ିବ...ଲିକ୍‌ଜାମ୍ କୋଠ !!

ନାଃ ! ଏମାନେ ସମସ୍ତେ ଅନ୍ଧ । ଅନ୍ଧମାନଙ୍କ ଭାଗ୍ୟରେ ନନ୍ଦନ କାନନ ନାହିଁ । ଜଣେ ବି କେହି ଆଡ୍‌ଭାନ୍‌ସ ଟିକଟ କରୁନାହାନ୍ତି । ଅଥଚ ଗାଡ଼ି ନ ପାହୁଣ୍ଡ ସମସ୍ତେ ଆସି ଜମା ହେଇଯିବେ । ସିଟ୍ ପାଇଁ ବାଡ଼ିଆବାଡ଼ି । ଗାଡ଼ି ଛାଡ଼ିଦେଲା ପରେ ଆସି ଟିକେଟ ମାଗିବେ । କହିବେ ଚନ୍ଦ୍ରକୁ ନେଇଯାଅ—ସ୍ୱର୍ଗରେ ପହଞ୍ଚେଇ ଦିଅ ! କହୋ ବାବୁ ! ଆମେ କ'ଣ କରିବୁ ? ଯାତ୍ରାବେଳେ ତ ଟିକେଟ ନଥିବ । ତାପରେ ଯେତେବେଳେ ବେଳ ହେବ—ସମସ୍ତେ କହିବେ ସ୍ୱର୍ଗକୁ ଗୋଟାଏ ଗୋଟାଏ ଟିକଟ ଦିଅ— । ମୁଁ ସେତେବେଳେ କେଉଁଠୁ ଟିକେଟ ଆଣିବି ? ଦେଖେ—ଆଉ ଟିକିଏ ଚେଷ୍ଟା କରେ—ଟିକଟ୍ ଟିକଟ...ନନ୍ଦନ କାନନ ପାଇଁ ଆଡ୍‌ଭାନ୍‌ସ୍ ଟିକେଟ୍ ନନ୍ଦନ କାନନ ...ନନ୍ଦନ...କାନନ...

[କ୍ରମଶଃ ଫଟିକ ଦାସର ସ୍ୱର ମିଳେଇଗଲା ଦୂରକୁ ଦୂରକୁ । ମଞ୍ଚର ରଙ୍ଗ ଧୂସର ନୀଳ ହେଲା । ପାଖେଇ ଆସିଲା ସମୁଦ୍ର ଗର୍ଜନ]

[ଦୂରରୁ କିଏ ଜଣେ ଦୌଡ଼ି ଦୌଡ଼ି ଆସିବା ଦେଖାଗଲା, ଅସ୍ପଷ୍ଟ । ସିଲୁଏଟ୍

ଡାକି । ତା'ପରେ ସେମାନେ କ୍ରମଶଃ ପାଖକୁ ଆସିଲେ । ଜଣାଗଲା ସେ ଦୁଇଜଣ ହେଉଛନ୍ତି ବିଶ୍ୱଜିତ୍ ଓ ମୀନା—ବୟସ ତିରିଶ ଓ ପଚିଶି । ସେମାନେ କ୍ଳାନ୍ତ ।

ବିଶ୍ୱଜିତ୍ ॥ ଆଃ, ! କ୍ଳାନ୍ତ ।

ମୀନା ॥ ମୁଁ ବି ହାଲିଆ ହୋଇଗଲିଣି ।

ବିଶ୍ୱଜିତ୍ ॥ ଆମେ ଅନେକ ଖୋଜିଲେଣି ।

ମୀନା ॥ ୟୁରୋପ, ଆମେରିକା, ଅଷ୍ଟ୍ରେଲିଆ ।

ବିଶ୍ୱଜିତ୍ ॥ ଉତ୍ତର ମେରୁ ଆଉ ଦକ୍ଷିଣ ମେରୁ ।

ମୀନା ॥ ସମସ୍ତେ କହୁଥିଲେ ଦକ୍ଷିଣ ମେରୁରେ ମିଳିବ ।

ବିଶ୍ୱଜିତ୍ ॥ କିନ୍ତୁ ସେଇଠି ମଧ୍ୟ ମିଳିଲା ନାହିଁ ।

ମୀନା ॥ ତମେ ଭଲଭାବରେ ଖୋଜିନା—

ବିଶ୍ୱଜିତ୍ ॥ ବୋଧହୁଏ ସେମାନେ ସବୁ ଆମକୁ ଭୁଲ ଖବର ଦେଲେ !

ମୀନା ॥ ଜାଣିଚ ? ମୁଁ ଗୋଟାଏ ଆମେରିକାନ୍ ଫିଲ୍ମରେ ଦେଖିଥିଲି—ଏମିତି ଖୋଜି ଖୋଜି ନାୟକ ନାୟିକା ଗୋଟାଏ ସୁନାଖଣି ପାଇଯାଇଥିଲେ ।

ବିଶ୍ୱଜିତ୍ ॥ କିନ୍ତୁ ମୀନା ! ଆମେ ସୁନା ଖଣି ଖୋଜୁନାହୁଁ । ଆନନ୍ଦ ଖୋଜୁଛୁ !

ମୀନା ॥ ଏକା କଥା । ଏମିତି ଖୋଜି ଖୋଜି ନହେଲେ ଆମକୁ ଗୋଟାଏ ସୁନାଖଣି ମିଳିଯିବ । ତା'ହେଲେ ଆମେ କ'ଣ ଖୁସି ହେବା ନାହିଁ ?

ବିଶ୍ୱଜିତ୍ ॥ କେଜାଣି ! ସତ କହିବାକୁ ଗଲେ ମୁଁ ଜଟିଳ ବାଟବଣା ହୋଇଗଲିଣି । ପୃଥିବୀସାରା ଏତେ ପ୍ରକାର ବିଚିତ୍ର ଆନନ୍ଦ ସବୁ ଭର୍ତ୍ତି ହୋଇଯାଇଚି ଯେ ବର୍ତ୍ତମାନ ସେଇଥିରୁ ପ୍ରକୃତ ଆନନ୍ଦ କେଉଁଟା ବାଛିବା ମୁସ୍କିଲ ହୋଇଯାଉଚି ।

ମୀନା ॥ ନା, ତମେ ବୋର୍ ହୋଇଗଲଣି । ସେଇଥିପାଇଁ ଏମିତି କହୁଚ ।

ବିଶ୍ୱଜିତ୍ ॥ ତମେ ତ ପୁରାପୁରି କ୍ଳାନ୍ତ ହୋଇପଡ଼ିଲଣି ।

ମୀନା ॥ ମୁଁ କିନ୍ତୁ ଖୋଜିବି । ଆନନ୍ଦ ନ ପାଇବା ଯାଏଁ ମୁଁ ମୋର ଏମିତି ଖୋଜୁଥିବି ।

[ ଦୌଡ଼ିଲା ଓ ଦୌଡ଼ି ଦୌଡ଼ି ହସୁଥିଲା । ପ୍ରଥମେ ହସଟା ଖିଲ୍ ଖିଲ୍ ଝରଣା ପରି ଲାଗିଲା ବିଶ୍ୱଜିତ୍‌କୁ । ସେ ସେଇଠି ମୁଗ୍ଧ ହୋଇ ଠିଆ ହେଲା । ତା'ପରେ କ୍ରମେ କ୍ରମେ ସେଇ ଆଡ଼କୁ ଆକର୍ଷିତ ହୋଇ ଦୌଡ଼ିଲା । ସେମାନେ ଦୌଡ଼ି ଦୌଡ଼ି ଆସି ଗୋଟିଏ କାଳ୍ପନିକ

ପାହାଡ଼ ଉପରେ କମ୍ବା ଏକ କାଳ୍ପନିକ ଆକାଶର କୌଣସି ଅଂଶ ଉପରେ ବସିଲେ ।

ଏକ ଅପାର୍ଥିବ ସଙ୍ଗୀତର ସ୍ୱର । ସେଇଠି ପକ୍ଷୀଙ୍କର କାକଳୀ ନାହିଁ, ସମୁଦ୍ରର ସ୍ୱର ନାହିଁ । ଖାଲି ଏକ ଶୂନ୍ୟ ଅନ୍ତରୀକ୍ଷର ସଂଗୀତ ]

ମୀନା ।। ଏଥର !

ବିଶ୍ୱଜିତ୍ ।। ହୁଁ !

ମୀନା ।। କ'ଣ ଭାବୁଚ ?

ବିଶ୍ୱଜିତ୍ ।। (ନୀରବ)

ମୀନା ।। ଆମେ ଆଉ ଖୋଜିବାନି ?

ବିଶ୍ୱଜିତ୍ ।। ନିଶ୍ଚୟ ଖୋଜିବା ।

ମୀନା ।। କୋଉଠି ? ଏଇଠିତ କିଛି ମିଳିଲା ନାହିଁ ।

ବିଶ୍ୱଜିତ୍ ।। ଆଉ ଏକ ନୂଆ ଠିକଣାକୁ ଯିବା ।

ମୀନା ।। ଏଥର ଗୋଟାଏ ଉନ୍ମୁକ୍ତ ଯାଗା । ଆଗରେ ଥିବ ସମୁଦ୍ରର ଅସୀମତା । ମନରେ ଆକାଶର ରଙ୍ଗୀନ ବର୍ଣ୍ଣାଳୀ । କ୍ଲାନ୍ତି ନଥିବ, ଈର୍ଷା କି ସନ୍ଦେହ ନଥିବ ... ଭୟ ନଥିବ ...

ବିଶ୍ୱଜିତ୍ ।। ଆଃ ! ଆମକୁ ଯଦି ସେମିତି ଗୋଟେ ଉପନିବେଶର ମାନଚିତ୍ରଟା ମିଳି ଯାଆନ୍ତା ...

ମୀନା ।। ମୋ' ବ୍ୟାଗ୍‌ରେ ସେମିତି ଅନେକ ମାନଚିତ୍ର ଅଛି । ଦେଖିବ .

ବିଶ୍ୱଜିତ୍ ।। ତମେ ନିଜେ ତ ଗୋଟାଏ ମାନଚିତ୍ର ...

ମୀନା ।। ଯାଃ— !

ବିଶ୍ୱଜିତ୍ ।। ନିଜେ ତମେ ଗୋଟାଏ ପୃଥିବୀ ...

ମୀନା ।। ଦେଖ, ଏଇଟା ରସିକତା ଦେଖେଇବା ସ୍ଥାନ ନୁହେଁ । ପ୍ରଥମେ ଆନନ୍ଦର ଠିକଣାଟା ମିଳୁ .. ତା'ପରେ ଯାହା କହିବ ସେୟା କରିବ !

ବିଶ୍ୱ ।। ମାପ୍ସ ! ତମେ ଗୋଟାଏ ମାପ୍ସ ।

ମୀନା ।। କ'ଣ କହିଲ ?

ବିଶ୍ୱ ।। [କିଛି ନାହିଁ] । କିଛି ସମସ୍ୟ ନୀରବତା ] [ ତା'ପରେ ]
ଏଇ...ଦେଖିଲ ମୀନା ।

ଏଇଟା ହେଲା ଆନନ୍ଦର ଖଣି !

ମୀନା ! ଆମେ ସେଇ ଆନନ୍ଦର ଖଣିପାଖକୁ ଯିବା । ସେଇଠି ...

ମୀନା ॥ ସେଇଠି ଆନନ୍ଦ ମିଳିବ ?

ବିଶ୍ୱଜିତ୍ ॥ ନିଶ୍ଚୟ ମିଳିବ । ତା' ଛଡ଼ା ସେଇଠି ବିମଳେନ୍ଦୁ ବି ଅଛୁ । ସିଏ ଯଦି ଆମକୁ ସାହାଯ୍ୟ କରେ...

ମୀନା ॥ ତମେ ବିମଳେନ୍ଦୁ ପାଖକୁ ଟେଲିଗ୍ରାମ୍ କରିଦିଅ—ଚ୍ଳ—ଆଉ ଡେରି କଲ୍ କାହିଁକି ଯେ ? ଆସ .. ଆସ . ଏସ୍...ଆସ ..

[ମୀନା ପୁଣି ସେଇ ରହସ୍ୟମୟୀ ପ୍ରକୃତି ଭଳି ବିଶ୍ୱଜିତ୍ ନାମକ ପୁରୁଷକୁ ଡାକୁଥିଲା । ବିଶ୍ୱଜିତ୍ ମୋହାବିଷ୍ଟ ହୋଇ ଘୂରୁଥିଲା ତା'ର ଚ୍ଳପଟେ । ସଙ୍ଗୀତରେ ପ୍ରଖରତା । କ୍ରମଶଃ ଆଲୋକରେ ମଧ୍ୟ ସେଇ ଗତିଶୀଳତା ଲକ୍ଷ୍ୟ କରାଗଲା । ଏପରି ଏକ ଚମତ୍କାର ଘୂର୍ଣ୍ଣନର ଅନ୍ତିମ ପରିଣତି ଅନ୍ଧାର । ସେଇ ଅନ୍ଧାର ଭିତରେ ପ୍ରଥମେ ଶୁଣାଗଲା ଗୋଟିଏ ଅତି ଦ୍ରୁତ ଗତିରେ ଆସୁଥିବା ଟ୍ରେନର ସ୍ୱର । ସ୍ୱର କ୍ଷୀଣ ହୋଇ ଆସିଲା । ଆଲୋକ ମଧ୍ୟ କ୍ଷୀଣ । କେବଳ ବିଶ୍ୱଜିତ୍ ଓ ମୀନା ଉପରେ ଆଲୋକ ପଡ଼ିଛି । ସେହିପରି ଘୂରୁ ଘୂରୁ ସେମାନେ ଯେପରି ଏକ ଅଦ୍ଭୁତ ଚୁମ୍ବକୀୟ ଶକ୍ତି ବଳରେ ପରସ୍ପର ପ୍ରତି ଆକର୍ଷିତ ହେଉଛନ୍ତି ଏବଂ ପର ମୁହୂର୍ତ୍ତରେ ପୁଣି ବିକର୍ଷିତ ହେଉଛନ୍ତି । ତା' ଭିତରେ ସେଇ ଅର୍ଦ୍ଧଚେତନ ଓ ଅର୍ଦ୍ଧ-ଅଚେତନ ଚେତନାର ଛୁଇଁ ଆଲୁଅ ଖେଳ ଆଲୋକ ଓ ସଙ୍ଗୀତର ସ୍ପଷ୍ଟତା ଓ ଅସ୍ପଷ୍ଟତା ମଧ୍ୟରୁ ଅନୁମେୟ—]

ବିଶ୍ୱଜିତ୍ ॥ ହୁଏତ ଆନନ୍ଦ ଆଉ ମିଳି ନପାରେ...

ମୀନା ॥ ଆସ ! ମୁଁ ତମକୁ ସେଇ ଆନନ୍ଦର ଖଣି ପାଖକୁ ନେଇଯିବି । ଆସ...

ବିଶ୍ୱଜିତ୍ ॥ କିଏ ଜାଣେ ଏଇଠି ମୁଁ ଯାହା ଖୋଜୁଛି ପାଇବି କି ନାହିଁ !

ମୀନା ॥ ମୁଁ କିନ୍ତୁ ସେଇ ଆନନ୍ଦ ଟିକକ ଖୋଜିବ ।

ବିଶ୍ୱଜିତ୍ ।। ତମେ କ୍ଲାନ୍ତ ହୋଇଗଲଣି । ଆନନ୍ଦ ଉପରୁ ବିଶ୍ୱାସ ତୁଟି ଗଲଣି ।

ମୀନା ।। ବେଟ୍ ! ମୋର ବିଶ୍ୱାସ ଥିବା ପର୍ଯ୍ୟନ୍ତ ମୁଁ ଖୋଜିବି ।

ବିଶ୍ୱଜିତ୍ ।। ମୁଁ ମଧ୍ୟ । ପୃଥିବୀର ସବୁ ସ୍ତରରେ...ସବୁ କୋଣରେ...

ମୀନା ।। କ'ଣ ?

ବିଶ୍ୱଜିତ୍ ।। ଆନନ୍ଦ । ଜୀବନରେ ଆନନ୍ଦ ନ ପାଇଲେ ଆଉ ବଞ୍ଚିବାରେ କୌଣସି ଅର୍ଥ ନାହିଁ ।

ମୀନା ।। ଠିକ କଥା । କିନ୍ତୁ ଆନନ୍ଦ କେଉଁଠି ?

ବିଶ୍ୱଜିତ୍ ।। ସେଇତ ସମସ୍ୟା । ସେଥିପାଇଁ ତ ଏତେ ହବୁ ଖୋଜା...ଏତେ ହବୁ ଝାନ୍ତ ନାକ ହୋଇ ଆମେ ସେଇ ଜିନିଷ ଖୋଜୁଛେ...

ମୀନା ।। ମୁଁ ମଧ୍ୟ ଖୋଜୁଛି । ପିଲାଦିନର କଣ୍ଢେଇ ଖେଳରୁ ଆରମ୍ଭ କରି କୈଶୋରର ସ୍ୱର୍ଗ ପର୍ଯ୍ୟନ୍ତ –

ବିଶ୍ୱଜିତ୍ ।। ମା'ର ଉଷ୍ମ ସ୍ତନଠାରୁ ଆରମ୍ଭ କରି ସାମାଜିକ ପ୍ରତିଷ୍ଠା ପର୍ଯ୍ୟନ୍ତ ।

ମୀନା ।। ଶାଢ଼ି, ଗହଣା, ଫ୍ଲାଟ୍, ଗାଡ଼ି...

ବିଶ୍ୱଜିତ୍ ।। ମୁଁ କ୍ଲାସ୍‌ରେ ପ୍ରଥମ ହେଉଥିଲି । ବର୍ତ୍ତମାନ ମୋ ରୋଜଗାର ବର୍ଷକୁ କୋଟିଏ । ମୋ' ପାଖରେ ଆଉ ଦଶବର୍ଷ ପରେ ଦଶ କୋଟି ଟଙ୍କା ଥିବ... ମୁଁ ଆଜି ଚାହିଁଲେ ମୁଖ୍ୟମନ୍ତ୍ରୀ ହୋଇପାରିବି...ମୋ' ପକେଟରେ ଦୁଇ ହଜାର ଭୋଟ୍...କିନ୍ତୁ...

ମୀନା ।। ମୁଁ ବି ଦିନେ ଚାହୁଁଥିଲି ମୋ ଦେହର ବନ୍ଦରରେ ଯାତ୍ରୀମାନଙ୍କୁ ବନ୍ଦୀ କରିବା ପାଇଁ...ସବୁ ବୃଥା । ମୁଁ ଜାଣି ପାରୁନି ପ୍ରକୃତ ଆନନ୍ଦ କେଉଁଠି !

ବିଶ୍ୱଜିତ୍ ।। (ଆତଙ୍କିତ ହୋଇ) ମୀନା !

ମୀନା ।। କ'ଣ ହେଲା ?

ବିଶ୍ୱଜିତ୍ ।। ଆମେ ବାହାଘର ପରେ ହନିମୁନ୍ କରିବା ପାଇଁ ବାହାରିଛେ !

ମୀନା ।। ମଧୁଚନ୍ଦ୍ରିକା !! ଆନନ୍ଦ ପାଇବାର ଏକ ଚରମ ସମୟ ।

ବିଶ୍ୱଜିତ୍ ।। କିନ୍ତୁ ତମେ ଯେ ବର୍ତ୍ତମାନ କହିଲ..... ତମ ଦେହର ବନ୍ଦରରେ ଅନେକ ଜାହାଜ ଲଗିଛି...ତା' ମାନେ... ?

ମୀନା ।। ଏ ମା ! ତମେ ମତେ ସନ୍ଦେହ କରୁଛ ?

ବିଶ୍ୱଜିତ୍ ।। ନା, ନା, ମୁଁ ଏତେଟା ସଙ୍କୀର୍ଣ୍ଣ ନୁହେଁ ।

(ହଠାତ୍ ଏକ ଅସ୍ୱାଭାବିକ ନିସ୍ତବ୍ଧତା; ଅସ୍ୱସ୍ତିକର ମଧ୍ୟ)

ମୀନା ।। ଏସ୍ତ୍ !
ବିଶ୍ୱଜିତ୍ ।। ହଁ...
ମୀନା ।। କ'ଣ ଭାବୁଛ ? ଆମେ ଆଉ ଖୋଜିବାନି ?
ବିଶ୍ୱଜିତ୍ ।। ନିଶ୍ଚୟ ଖୋଜିବା ।
ମୀନା ।। କୋଉଠି ?
ବିଶ୍ୱଜିତ୍ ।। ଏଇଠି ତ ମିଳିଲା ନାହିଁ ।

ମୀନା ।। ଆଉ ଏକ ନୂଆ ଷ୍ଟେସନକୁ ଯିବା...

ବିଶ୍ୱଜିତ୍ ।। ଗୋଟାଏ ଉନ୍ମୁକ୍ତ ଯାଗା...ଆଗରେ ସମୁଦ୍ର ଥିବ...ମନରେ ଶାନ୍ତି ଥିବ ।

ମୀନା ।। କ୍ଲାନ୍ତି ନଥିବ...ଈର୍ଷା ନଥିବ...ଭୟ ନଥିବ...

ବିଶ୍ୱଜିତ୍ ।। ଆଃ ! ଆମକୁ ଯଦି ସେଇ ଉପନିବେଶର ମାନଚିତ୍ରଟା ମିଳିଯାଆନ୍ତା !

ମୀନା ।। (ବ୍ୟାଗ୍‌ରୁ ଗୋଟିଏ ନକ୍‌ସା ବାହାର କରି) ଦେଖିଲ ! ଏଇଠି ଗୋଟେ ଯାଗା—

ବିଶ୍ୱଜିତ୍ ।। ତମେ କ'ଣ ନିଶ୍ଚିତ ଯେ ସେଇଠିକି ଗଲେ ଆନନ୍ଦ ମିଳିବ !

ମୀନା ।। ଆଉ ସବୁ ସ୍ଥାନ ତ ଆମେ ବୁଲି ଦେଖିଲେ —

ବିଶ୍ୱଜିତ୍ ।। ଚାଲ, ସେଠିକି ଯିବା । ସେଇଠି ମୋର ଜଣେ ବନ୍ଧୁ ଅଛନ୍ତି, ତାଙ୍କୁ ମୁଁ ଚିଠି ଲେଖୁଛି। ସିଏ ଆମକୁ ଷ୍ଟେସନରୁ receive କରି ନେଇଯିବେ, ଆସ ।

[ ଦୁହେଁ ଚାଲିଗଲେ ଓ ମଞ୍ଚ ଅନ୍ଧାର ହେଲା ।
ତା'ପରେ ଗୋଟିଏ କୋଳାହଳମୟ ଷ୍ଟେସନ୍‌ର
ବାତାବରଣ । ଗାଡ଼ି ପହଞ୍ଚିବାର ଘଣ୍ଟି ବାଜିଲା]

Your attention please !

ଭଏସ୍‌ ।। ଆନନ୍ଦ ନଗର । କେତେଜଣ ଆନନ୍ଦ ଖୋଜୁଥିବା ଲୋକଙ୍କୁ ନେଇ ଗୋଟିଏ ସ୍ପେଶାଲ ଟ୍ରେନ ଏଇଠି ପହଞ୍ଚୁଛି । ଏ ଗାଡ଼ି ଆସନ୍ତା ଅଢ଼େଇ ଘଣ୍ଟା ପାଇଁ ଏଇଠି ରହିବ ।

ଗୋଟିଏ ଟ୍ରେନ୍ ଷ୍ଟେସନରେ ଅଟକିଲା ।
ବିଶ୍ୱଜିତ୍ ଓ ମୀନା ସେଇଠି ଓହ୍ଲାଇଲେ ।

ମୀନା ।। କାଇଁ, କେହିତ ଦିଶୁନାହାନ୍ତି !
ବିଶ୍ୱଜିତ୍ ।। ଟିକିଏ ଅପେକ୍ଷା କର ।
ମୀନା ।। ତମେ ବନ୍ଧୁଙ୍କୁ ଟେଲିଗ୍ରାମ୍ କରିଥିଲଟି ?
ବିଶ୍ୱଜିତ୍ ।। ହଁ ! କିନ୍ତୁ ଟେଲିଗ୍ରାମ୍ ଯଦି ପହଞ୍ଚି ନଥିବ ?

ମୀନା ।। ଦ୍ୱିଗୁଣ ହେଇଯିବା ।

ବିଶ୍ୱଜିତ୍ ।। ରୁହ । ମୁଁ ଟିକେ ଦେଖୁଛି ।

ମୀନା ।। ମୋ' ମୁଣ୍ଡ ବିନ୍ଧିଲାଣି ।

ବିଶ୍ୱଜିତ୍ ।। ଚା' ପିଇବ ?

ମୀନା ।। ଇସ୍ ଏଇ କୋଇଲା ଗୁଣ୍ଡ ମିଶା ଷ୍ଟେସନ୍ ଚା' ? ମୋର ବାନ୍ତି ହୋଇଯିବ ।

ବିଶ୍ୱଜିତ୍ ।। ଫ୍ଲାସ୍କ୍‌ରେ ଚା' ନାହିଁ ?

ମୀନା ।। ନା, ତମେ ଟିକେ ଦେଖନ୍ତ'...ତମ ସାଙ୍ଗ ଗଲେ କୁଆଡ଼େ ..

ବିଶ୍ୱଜିତ୍ ।। (ଟିକେ ଏପଟ ସେପଟ ହୋଇ) ନା, କୋଉଠି ତ ଦିଶୁନି ।

ମୀନା ।। ତମେ ଯେମିତି...ତମ ବନ୍ଧୁ ସେମିତି...ଠକ ।

ବିଶ୍ୱଜିତ୍ ।। ଏସ୍ତ ! ମୋ ସାଙ୍ଗମାନଙ୍କୁ ତମେ ସେମିତି କହି ପାରିବନି !

ମୀନା ।। କାହିଁକି ମ ? ଅସିଲେ ସବୁ ସୁବିଧା କରିଦେବେ ବୋଲି ଲେଖୁଥିଲେ— ଅଥଚ ଏଇଠି ପହଞ୍ଚିଲା ବେଳକୁ ବାବୁଙ୍କର ଦେଖାନାହିଁ ।

ବିଶ୍ୱଜିତ୍ ।। ଗାଡ଼ି ଖଣ୍ଡିକ ତମର ପାଞ୍ଚ ଘଣ୍ଟା ଲେଟରେ ପହଞ୍ଚିଲା ଯେ—

ମୀନା ।। (ମନକୁ ମନ) ପୋଡ଼ାମୁହାଁ । ଗାଡ଼ିଟାକୁ ମରଣ ହେଲାନି...

ବିଶ୍ୱଜିତ୍ ।। ଆହା...ବିଚରା ଗାଡ଼ିଟା...Air-Conditioned Compartment ରେ ଆସୁ ଆସୁ ତ ତମ ଅବସ୍ଥା ଏମିତି—ଯଦି ସେକେଣ୍ଡ କ୍ଲାସରେ ଆସିଥାଆନ୍ତ ...'ଆନନ୍ଦ ନଗର'ଟା 'ଯନ୍ତ୍ରଣା ନଗର' ହୋଇଯାଆନ୍ତା ।

ମୀନା ।। ଥଟ୍ଟା କରୁଚ କ'ଣ ଯେ ? ମତେ ଭାରି ଚିଡ଼ି ମାଡ଼ିଲାଣି ।

ବିଶ୍ୱଜିତ୍ ।। ଚିଡ଼ିଲେ କ'ଣ ହେବ ମୀନା ? ଆନନ୍ଦ ଖୋଜୁଥିବା ଏଇ ମୂଲ୍ୟବାନ ଜୀବନର କେତୋଟି ମୁହୂର୍ତ୍ତ ଅକାରଣରେ ନଷ୍ଟ ହୋଇଯିବ ସିନା !

ମୀନା ।। ଆନନ୍ଦ ନା ଛେନା ! ବର୍ତ୍ତମାନ କ'ଣ କରାଯିବ କହିଲ ?

ବିଶ୍ୱଜିତ୍ ।। ଷ୍ଟେସନରେ ରହିଯିବା ।

ମୀନା ।। ତା'ପରେ ?

ବିଶ୍ୱଜିତ୍ ।। ସକାଳ ହେଲେ କମଳେନ୍ଦୁର ଖବର ନେବା ।

ମୀନା ।। ଦରକାର ନାହିଁ ।

ବିଶ୍ୱଜିତ୍ ।। ଦେଖ, ଶୀତଦିନ ରାତି, ଏଗାରଟା ବାଜିଲାଣି—ଗାଡ଼ିଟା ପୁଣି ପାଞ୍ଚ ଘଣ୍ଟା ଲେଟ୍‌ରେ ପହଞ୍ଚିଛି—ଏଥିରେ କମଳେନ୍ଦୁକୁ ନିନ୍ଦା କରିହେବନି ।

ମୀନା ।। ବମଲେନ୍ଦୁର ଆଉ ଦରକାର କ'ଣ ଯେ? ଆମେ ତ 'ଆନନ୍ଦ ନଗର'ରେ ପହଞ୍ଚି ଗଲେଣି !

ବିଶ୍ୱଜିତ୍ ।। ଆମେ ଏଇଠି ନୂଆ ଲୋକ ! ଆମ ପାଖରେ ଆନନ୍ଦର କୌଣସି ଠିକଣା ବି ନାହିଁ !

ମୀନା ।। ଏତେ ଦେଶ ବୁଲିଲେ......ଜଳ, ସ୍ଥଳ, ଆକାଶ ଗ୍ରହ, ଉପଗ୍ରହ, ପୃଥିବୀ, କେଉଁଠି ତ ଆମେ ହଜି ଯାଇନେ ! ଏଇଠି ଗାଇଡ୍ ନଥିଲେ ତମକୁ ଡର ଲାଗୁଛି ନା ମାଡ଼ିବ ?

ବିଶ୍ୱଜିତ୍ ।। ଡର କାହିଁକି ମାଡ଼ିବ ?

ମୀନା ।। ତେବେ ? ଅଚ୍ଛା . ଆମର ପ୍ରୋଗ୍ରାମ୍ କ'ଣ ଯେ ?

ବିଶ୍ୱଜିତ୍ ।। ଏଇଠି ଷ୍ଟେସନର Rest house ରେ ରହିଯିବା...ସକାଳୁ ଖୁବ୍ ବୁଲା ହେବ । ତା'ପରେ 'ସାନ୍-ଏନ୍-ସାଣ୍ଡ୍'ରେ ଲଞ୍ଚ୍ . ଫେରିଆସି ଗୋଟାଏ ବ୍ଲୁ' ଫିଲ୍ମ୍

ମୀନା ।। ତା'ପରେ ?

ବିଶ୍ୱଜିତ୍ ।। ତା'ପରେ ରାତିରେ ଡ଼ିନର୍ ଖାଇ ବନା କ୍ୟାମେରାମେନ୍‌ରେ ଆମେ ରୁମ୍ ଭିତରେ ଆଉ ଗୋଟାଏ ବ୍ଲୁ' ଫିଲ୍ମ୍ ତିଆରି କରିବା ।

ମୀନା ।। ଅଭଦ୍ର ।

ବିଶ୍ୱଜିତ୍ ।। ସେଇଠି ତ ଆନନ୍ଦ ନଗରର ସବୁ ଆନନ୍ଦ ଠୁଳ । ତମକୁ କ'ଣ ଭଲ ଲାଗୁନଥିବ କି ?

ମୀନା ।। ହଉ ତମେ ଗଲ ! ପ୍ରଥମେ ଷ୍ଟେସନ୍‌ରେ ରୁମ୍‌ର ବ୍ୟବସ୍ଥା କରି ଆସିବ ।

ବିଶ୍ୱଜିତ୍ ।। ତମେ ଏଇଠି କ'ଣ କରିବ କି ? ଏକାଠି ଯିବା—ଚାଲୁନା ?

ମୀନା ।। ଚାଲ ।

(ଦୁହେଁ ଷ୍ଟେସନର ଉପର ମହଲାରେ ଥିବା ରେଷ୍ଟ୍ ହାଉସ୍ ଆଡ଼କୁ ଗଲେ । ସେମାନେ ଅଦୃଶ୍ୟ ହେବାପରେ ମଞ୍ଚରେ ଆଲୋକ ବଢ଼ିଲା । ଘଣ୍ଟାରେ ଚାରିଟା ବାଜିଲା ଏବଂ ମଞ୍ଚ ଅନ୍ଧକାର ହେଲା । ଆବହ ସଙ୍ଗୀତ କ୍ରମଶଃ ଗମ୍ଭୀର ହୋଇ ଏକ ଅତଭୌତିକ ପରିବେଶର ସୂତ୍ରପାତ କଲା । ହଠାତ୍ ଏକ ଆଲୋକର ବୃତ୍ତ ତିଆରି ହେଲା । ତା'ରି ଭିତରୁ ଏକ ଅତିମାନବର ହାସ୍ୟରୋଳ ଭାସି ଆସିଲା ପ୍ରତିଧ୍ୱନି ଭଳି । ତାହାର ପ୍ରତିଧ୍ୱନି

ହୁଏତ କହୁହେବ ନାହିଁ)। ତା'ପରେ ଦୃଶ୍ୟମାନ ହେଲା, ସେଇ ପ୍ରତିଧ୍ୱନିର ମୂର୍ତ୍ତି। ମୁଣ୍ଡରେ ରତ୍ନ ଖଚିତ ମୁକୁଟ, ଗଳାରେ ନବରତ୍ନର ଚନ୍ଦ୍ରହାର, ମୁଣ୍ଡର ବାଳ ମୁକୁଟ ତଳୁ ବର ଓହ୍ଲାଇ ପଡ଼ି ଲମ୍ବି ଆସିଛି ସ୍କନ୍ଧ ପର୍ଯ୍ୟନ୍ତ ଏବଂ ହାତରେ ତା'ର ଗୋଟିଏ ଡାଆ! ତା'ପରେ ସେଇ ବଳସ୍ଥ ଭିତରୁ ଉଠିଲେ ଲଢ଼ ଏବଂ ପ୍ରସାରିତ ହସ୍ତରେ ମୁକ୍ତ ଡା'ଟିକୁ ଧରି ପ୍ରାୟ ନାଚିଲା ଭଳି ଓହ୍ଲାଇ ଆସିଲେ। ହାଜାଟି Folk ଢଙ୍ଗର ବାଘନାଚ ବେଲର ତାଳ। ତାଙ୍କୁ ଦେଖିଲେ ମନେ ହେବ, ସେ ଯେମିତ ସତରେ ଡା'ଟିଏ ଧରି ଶୂନ୍ୟରେ ଝୁଲୁଥିବା ଫୁଲ ବର୍ଗଟ୍ଟମାନଙ୍କୁ କାଟିବାରେ ଉନ୍ମତ୍ତ। ଏଇ ଚରିତ୍ରର ନାମ ହେଲା ମେଘନାଦ ସାମନ୍ତ ]

ମେଘନାଦ ।। (ଚକ୍କାର କରି ଉଠିଲେ) ବୁଲ୍‌ବୁଲ୍‌ !

ବୁଲ୍‌ବୁଲ୍‌ ।। (ଏଇ ରହସ୍ୟମୟ ଚରିତ୍ରଟି ଗୋଟିଏ ହାତରେ ଲଣ୍ଠନ ଓ ଅନ୍ୟ ହାତରେ ଗୋଟିଏ ଲଠି ଧରି ପ୍ରବେଶ କଲା) ବୁଲ୍‌ବୁଲ୍‌ ଲଠିଆଳ ହାଜର୍ ହେ !

ମେଘନାଦ ।। ଆଜିର ସମାଚାର ?

ବୁଲ୍‌ବୁଲ୍‌ ।। ଆନନ୍ଦ ଖୋଜି ଖୋଜି ଏକ ଦମ୍ପତି ଏଇଠି ଆସି ପହଞ୍ଚିଛନ୍ତି।

ମେଘନାଦ ।। ତାଙ୍କ ନାଁ ?

ବୁଲ୍‌ବୁଲ୍‌ ।। ବିଶ୍ୱଜିତ୍ ଆଉ ମିନାକ୍ଷୀ !

ମେଘନାଦ ।। ଆନନ୍ଦ କ'ଣ ସେମାନେ ଜାଣନ୍ତି ?

ବୁଲ୍‌ବୁଲ୍‌ ।। ଓଃ !! (ହଠାତ୍ ଚକ୍କାର କରିଉଠିଲା ଯନ୍ତ୍ରଣାରେ)

ମେଘନାଦ ।। କ'ଣ ହେଲା ?

ବୁଲ୍‌ବୁଲ୍‌ ।। ପେଟ ଭିତରେ...

ମେଘନାଦ ।। କ'ଣ ହେଲା ?

ବୁଲ୍‌ବୁଲ୍‌ ।। ମୂଷାଟେ ପଶିଗଲା !

ମେଘନାଦ ।। ତମ ପେଟ ଭିତରେ ମୂଷାଟେ ପଶି ଯାଉଛି କାହିଁକି ସବୁବେଳେ ?

ବୁଲ୍‌ବୁଲ୍‌ ।। ମୋ ଅନ୍ତୁଡ଼ିଗୁଡ଼ାକୁ ଟିକ୍ ଟିକ୍ କରି କାଟିଦେଉଛି ।

ମେଘନାଦ ।। ଶୋଇଯାଅ, ଚିନ୍ତାକର ଅରାମ୍ ମିଳିବ ।

ବୁଲ୍ ବୁଲ୍ ।। ଓଃ !! (ସେ ଯନ୍ତ୍ରଣାରେ ଗଡ଼ିଗଲା)

ମେଘନାଦ ।। ପ୍ରତ୍ୟେକ ଥର ଏମିତି ଆନନ୍ଦ ଖୋଜୁଥିବା ଲୋକଙ୍କୁ ଦେଖିଲେ ତମର ପେଟ ଭିତରେ ଚୋଟିଏ ମୂଷା ପଶିଯାଏ; ଏବଂ ତମେ ଯନ୍ତ୍ରଣାରେ ଛଟପଟ ହୁଅ ।

ବୁଲ୍ ବୁଲ୍ ।। ଏବଂ ପ୍ରତ୍ୟେକ ଥର ଆପଣ ମତେ କହନ୍ତି ! ସେମାନଙ୍କୁ ଧରିଆଣ ।

ମେଘନାଦ ।। କାରଣ ମୁଁ ଜାଣିବି ଆନନ୍ଦ କ'ଣ !

ବୁଲ୍ ବୁଲ୍ ।। ସେମାନେ ମଧ ଜାଣନ୍ତି ନାହିଁ ଆନନ୍ଦ କ'ଣ !

ମେଘନାଦ ।। କିନ୍ତୁ ସେମାନଙ୍କ ପାଖରେ ଯୌବନ ଅଛି । ସ୍ୱାସ୍ଥ୍ୟର ଖେଳ ପଡ଼ିଆରେ ତାଙ୍କର ଦୋଡ଼ାଦୌଡ଼ି ଚାଲିଛି । ଆନନ୍ଦର ଅନୁଭୂତି ପାଇବା ପାଇଁ ସେମାନେ ନୂତନ ମହାଦେଶ ଅନ୍ବେଷଣ କରୁଛନ୍ତି ।

ବୁଲ୍ ବୁଲ୍ ।। ଓଃ ! ଭୀଷଣ ଯନ୍ତ୍ରଣା । ସେମାନେ ଯେତେଦିନ ଆନନ୍ଦର ପତ୍ତା ପାଇ ନଥିବେ ସେତେଦିନ ମୋ ପେଟରେ ଏମିତି ମୂଷା ପଶୁଥିବେ ।

ମେଘନାଦ ।। ତମେ ଆଉ ଏକ ଆଦର୍ଶବାଦୀ ପାଗଳ ! ପୃଥିବୀର ସବୁ ଯନ୍ତ୍ରଣାକୁ ତମେ ନିଜର କରିନେଇଛ !

ବୁଲ୍ ବୁଲ୍ ।। ସେମାନଙ୍କର ଦୁଃଖ, କଷ୍ଟ ସବୁ ମୋର ହୋଇଯାଉ । ତା ହେଲେ ବା କାଳେ ସେମାନେ ଆନନ୍ଦ ପାଇବେ !

ମେଘନାଦ ।। କିଏ ଜାଣେ, ସେମାନେ ହୁଏତ ଆନନ୍ଦର ଆଉ ଏକ ନୂତନ ଫର୍ମୁଲା ତିଆରି କରିଛନ୍ତି ।

ବୁଲ୍ ବୁଲ୍ ।। ଯୁଗ ଯୁଗ ଧରି ଏମିତି ଶହ ଶହ ଫର୍ମୁଲା ଆପଣଙ୍କ ପାଖରେ ଅଛି !

ମେଘନାଦ ।। ନିରର୍ଥକ । ସେମାନଙ୍କର ଫର୍ମୁଲା ଭୁଲ । ସେଥିପାଇଁ ମୁଁ ନୂଆ ଲୋକ ଖୋଜୁଛି । ତମେ ଯାଅ ବୁଲ୍ ବୁଲ୍ ସେମାନଙ୍କୁ ଏଇଠିକି ଆଣିବା ବ୍ୟବସ୍ଥା କର ।

ବୁଲ୍ ବୁଲ୍ ।। ପୁଣି ଦୁଇଜଣ ସ୍ୱପ୍ନ ଦେଖାଳି ! ତ'ଣ: ଲାଭ ହେବ ?

ମେଘନାଦ ।। କିଏ ଜାଣେ ସେମାନେ ହୁଏତ ଜାଣିଥିବେ ।

ବୁଲ୍ ବୁଲ୍ ।। ମୁଁ ଶିକାରୀ କୁ ପଠେଇବି ।

ମେଘନାଦ ।। ଶୀଘ୍ର ପଠାଅ । ବର୍ଷ ବର୍ଷ ଧରି ଆମେ ସେଇ ଫର୍ମୁଲାଟା ନପାଇ ଏମିତି ଯନ୍ତ୍ରଣାରେ ଛଟପଟ ହେବା ଘୋର ଲଜ୍ଜାର ବିଷୟ । ଆଜି ଯେମିତି

ହେଲେ ଏଇ ଦୁଇଜଣଙ୍କ ଠାରୁ ଆମକୁ ଆନନ୍ଦର ଠିକଣା ପାଇବାକୁ ପଡ଼ିବ, ଯାଅ ।

ବୁଲ୍‌ବୁଲ୍ ॥ ଠିକ୍ ଅଛି । (ଯାଉଥିଲା)

ମେଘନାଦ ॥ ବୁଲ୍‌ବୁଲ୍ !

ବୁଲ୍‌ବୁଲ୍ ॥ ଆଜ୍ଞା !

ମେଘନାଦ ॥ ଚନ୍ଦନ ସ୍ୱଦାଗର କେଉଁଠି ?

ବୁଲ୍‌ବୁଲ୍ ॥ ଜାଲ ପକାଉଛନ୍ତି ।

ମେଘନାଦ ॥ ତଥାପି ତା'ର ଅନ୍ୱେଷଣ ଚାଲିଛି ?

ବୁଲ୍‌ବୁଲ୍ ॥ ହଜୁର୍ ।

ମେଘନାଦ ॥ ତାକୁ ପଠେଇ ଦିଅ—

ବୁଲ୍‌ବୁଲ୍ ଚାଲିଯାଇଛି । କ୍ରମଶଃ ମେଘନାଦଙ୍କ ଶରୀର ଏକ ଗର୍ଜନ କରୁଥିବା ସମୁଦ୍ରର ରୂପ ଓ ନେଇ ଭିତରେ ଲିଭିଗଲା ଏବଂ ସେଇ ଗର୍ଜନ ଭିତରୁ ତାଙ୍କର ଶବ୍ଦ ଶୁଣାଗଲା ।

ଏ ପୃଥିବୀ ଦୁଃଖ ଓ ଶୋକରୁ ମୁକ୍ତ ହେଉ । ଏ ଜୀବନ ଆନନ୍ଦମୟ ହେଉ । ଏ ମଣିଷ ସ୍ନାୟୁର ଶିହରଣକୁ ଆନନ୍ଦ ମନେକରି ଶବ୍ଦହୀନ ଅନ୍ଧାରର ଗହ୍ୱର ଭିତରକୁ ଖସି ନ ଯାଉ । ଓଁ ଶାନ୍ତିଃ .... ଓଁ ଶାନ୍ତିଃ .. . ଓଁ ଶାନ୍ତିଃ...... ।

। ଅନ୍ଧାର କଟିଯାଇ ମଞ୍ଚ ପୁଣି ଆଲୋକିତ ହେଲାବେଳକୁ ଦେଖାଗଲା ଗୀତ ଗାଇ ଗାଇ ଆସୁଛି ଭିକାରୀ ଚରଣ । ପୁଣି ସେଇ ଷ୍ଟେସନର ବାତାବରଣ । ଭିକାରି ଚରଣ ବେଶ୍‌ହେବ ଠିକ୍ ଜଣେ ଯାତ୍ରୀ ଗୃହସ୍ଥ ପରି । କପାଳରେ ସିନ୍ଦୂର, କଳି, ମୁହଁରେ ପାନଝୋଳ, ଧୋତି ଓ ଆଉଖଣ୍ଡେ ନାଲି ଗାମୁଛା, ପିନ୍ଧିଛି ଗୋଟିଏ ମଇଳା ହୋଇ ଆସୁଥିବା ପଲିଷ୍ଟର ପଞ୍ଜାବୀ ।

ଭିକାରୀ ॥ (ଅଭିନୟ କରି ଗାଉଛି)

ଦେଖ ଗୋ, ସଖୀ ଦେଖ ଗୋ'
ରାଧା ମାଧବ ବୁଲି,

ଝୁଁକି ଝୁଁକି ଝୁଁକି କରିବାକୁ ଖେଳ
ଆନନ୍ଦ ନଗରେ ଆସିଛୁ ବୁଲି ॥୦॥
ଧୂଳିଗୁଣ୍ଡି ଆଉ ଜାଇଫଳ ଦେଇ
ଅତି ଯତନରେ ସାଙ୍ଗିଛୁ ପାନ,
ଆନନ୍ଦ ନଗର ଅତି ମନୋହର
ଦେଖିବାକୁ ଅରେ ବଳୁଛୁ ମନ;
ହଖୀ ଗୋ, ମୋର ସଖୀ ଗୋ'
ମତେ ଲଗେ ବାଉଳ
କେମିତି ବୁଝିବ ଦେଲେ ମିଠା ଚୋର
ଅଂଚଳ ଟଙ୍କିଆ ଝିଲି ଓଳ ॥୧॥

ଏଇ ଗୀତଟି ଗାଇ ଗାଇ ଭିକାରୀ ଆନନ୍ଦ ନଗର ଷ୍ଟେସନ୍‌ରେ ବୁଲୁଥିଲା ବେଳେ ହାତରେ ହାତ ଛନ୍ଦି ବଶୀକର ଓ ମୀନା ଷ୍ଟେସନ୍‌ର ଉପରୁ ଓହ୍ଲାଇ ଆସିଲେ । ମୋଟାମୋଟି ଭିକାରୀର ଗୀତଟି ସେମାନଙ୍କ ପାଇଁ ଏକ ଇଂଗିତ ହୋଇପାରେ ।

ମୀନା ॥ ନ ମିଳନ୍ତା କାହିଁ, ଏତେ ବ୍ୟସ୍ତ କାହିଁକି ହଉଚ ?

ବଶୀକର ॥ ଯୋଡ଼ିଏ ଦଶ ଟଙ୍କିଆ ପକେଟରେ ଗୁଞ୍ଜି ଦେଇଥିଲେ ମିଳିଥାନ୍ତା ।

ମୀନା ॥ କୋଉଠୁ ମିଳିଥା'ନ୍ତା ? ସବୁଠାରେ ଲୋକ ଥିଲେ ।

ବଶୀକର ॥ ଅବଶ୍ୟ, ସେ କଥା ସତ । ମିଳିଥିଲେ ମଧ୍ୟ ସବୁରେ ଆମେ free ହୋଇ-ପାରନ୍ତେ କାହିଁ ।

ମୀନା ॥ ଏ ଷ୍ଟେସନର ଷ୍ଟାଫ ଗୁଡ଼ା ଖୁବ୍ ବଜାଯା । ଟେବୁଲ ପକେଇ ଖାଇଲାଗେ ବାଟେ Room ଭିତରକୁ ଉଣ୍ଡିବେ ।

ବଶୀକର ॥ ତମେ କେମିତି ଜାଣିଲ ?

ମୀନା ॥ ମୁଁ ଜାଣେ ।

ବଶୀକର ॥ କେମିତି ଜାଣିଲ ?

ମୀନା ॥ ମାନେ ? ତମେ ମତେ ସନ୍ଦେହ କରୁଛ ?

ବଶୀକର ॥ ଆଶ୍ଚର୍ଯ୍ୟ ! ଦେଉଳକୁ କାହିଁକି ଯାଇଥିଲ ? ନା—ମୁଁ କଦଳୀ ଖାଇବ !

ମୀନା ॥ ଏସ୍ତ ! ମୁଁ ସେମିତିକା ଝିଅ ନୁହେଁ ।

[ଦୁହେଁ ଓହ୍ଲାଇ ଆସିଲେ ଚଳନ୍ତି। ଭିକାରୀ ପୁଣି ଥରେ ଗାଇଲେ।

ଭିକାରୀ ।। (ମନକୁ ମନ) ସଖୀ ଗୋ...ମୋର ସଖୀ ଗୋ...
ମତେ ଲାଗେ ବାଉଳା
କେମିତି ଲୁଚିଛି କେତେ ମିଠା ଚୋର
ଅନ୍ତରେ ଝଙ୍କି ଆ ଘୁଙ୍ଗୁର ଉଲା ..ସଖୀ ଗୋ'...

ବିଶ୍ୱଜିତ୍ ।। କ'ଣ କରିବା

ମୀନା ।। (ମନକୁ ମନ) ଅଭଦ୍ର ! ବଜ୍ରାସ !

ବିଶ୍ୱଜିତ୍ ।। ମୁଁ କି ? ଚାଲ । ପ୍ରଥମେ ହୋଟେଲ ମିଳିଯାଉ—ଦେଖିବ କଏ ବଜ୍ରାସ
ଭିକାରୀ ।। କୋଉଠୁ ଆସିଲେ ବାବୁ ! ବାବା......!! କୋଲକାତା ପଥରେ ଏବେଆସିଛନ୍ତି ?
ମୀନା ।। ଚାଲ ମ', ଶୀଘ୍ର ହୋଟେଲ ମିଳିବ !
ଭିକାରୀ ।। ଚୁପ୍ ଚୁପ୍ ବାହାଡ଼ିଏ କେମିତି ବାବା ? ଆସନ୍ତୁ ..

ବିଶ୍ୱଜିତ୍ ।। ଚାଲ ।
ମୀନା ।। ମୁଁ ଟିକିଏ ବାଥ୍‌ରୁମ୍‌କୁ ଯିବି । First class waiting roomଟା କେଉଁଠି ?

ବିଶ୍ୱଜିତ୍ ।। ହେଇ ସେଇଠି । ଜଲ୍‌ଦି ଆସ ।

[ମୀନା ଚାଲିଗଲେ ପରେ ଅନ୍ୟମନସ୍କ ବିଶ୍ୱଜିତ୍ ପାଖକୁ ଆସିଲା ଭିକାରୀଚରଣ]

ଭିକାରୀ ।। ଜୟ ଜଗନ୍ନାଥ ଜୀ କେ ! ଲେହୁଁ । ସେ ଆସ୍ଥେ ହେଁ ବାବୁଜୀ ? କଲ୍‌କତା ସେ ? ଇସି ଗାଡ଼ିମେ ଆୟେ ହୋ କ୍ୟା ?
ବିଶ୍ୱଜିତ୍ ।। ନାହିଁ ଭାଇ, ଆମେ ଓଡ଼ିଆ ଲୋକ— ଏମିତି ବୁଲି ଆସିଛୁ ।

ଭିକାରୀ ।। କିଛି ପରବାଏ ନାହିଁ ଅବ୍ ଧାନ୍ ! ଆନନ୍ଦ ନଗରକୁ ଆସିଛନ୍ତି ଆପଣ । ଭାଗ୍ୟରେ ଥିଲେ ମାଲିକ୍, ଲୋକ ଏଇଠି କ ଆସନ୍ତି ! ଚାଲନ୍ତୁ ଆପଣଙ୍କୁ ବଢ଼ିଆ ଜାଗାରେ ରଖେଇ ଦେବା ।

ବିଶ୍ୱଜିତ୍ ।। ଏଇଠି ଏଇଲେ ହୋଟେଲ ମିଳିବଟି ?

ଭିକାରୀ ।। ପୂଜା ବଜାର ମାଲିକ । କଲିକତାରୁ ଦଶ ଦଣ୍ଟା ସ୍ପେଶାଲ୍ ଟ୍ରେନ ଲାଗିଛି । ହୋଟେଲ, ଧର୍ମଶାଳା, ମୁସାଫିରଖାନା ସବୁ ଖୁନ୍ଦି ହୋଇଯାଇଛି ।

ବିଶ୍ୱଜିତ୍ ।। ମୋର ଜଣେ ସାଙ୍ଗ ଏଇଠି ଅଛି । ଆମେ ତାଙ୍କ ଘରେ ରହିବା ପ୍ରୋଗ୍ରାମ୍ ଥିଲା । ସିଏ ନ ଆସିବାରୁ ସବୁ ହଇରାଣ ।

ଭିକାର ।। ହଇଗଣ ତ'ଣ ଆଜ୍ଞା ? ସବୁ ଭାଗ୍ୟ ଉପରେ କଥା, ଭାଗ୍ୟରେ ନଥିଲେ ଆପଣ ବନ୍ଧୁଙ୍କୁ ଦେଖିପାରନ୍ତେ ନାହିଁ । ମୋର ଭାଗ୍ୟ ଟାଣ ବୋଲି ଆପଣଙ୍କ ସଙ୍ଗରେ ଦେଖା ହୋଇଗଲା, ଏଇନେ ଚାଲନ୍ତୁ ମୋ' ସାଙ୍ଗରେ ଭାଗ୍ୟ ଯଦି ଟାଣ ଥିବ, ତା'ହେଲେ ଘର ଖଣ୍ଡେ ବି ମିଳିଯିବ ---

(ମୀନା ଫେରି ଆସିଲା)

ମୀନା ।। ଚାଲ ।

ବିଶ୍ୱଜିତ୍ ।। ଏଏ କହୁଛନ୍ତି ଆମ ପାଇଁ ଘର ଯୋଗାଡ଼ କରିଦେବେ ।

ମୀନା ।। ହୁଁଃ ! ଘର କ'ଣ ଆମେ ଯୋଗାଡ଼ କରିପାରିବୁନି ?

ଭିକାର ।। ମାଡ଼ାମ୍ ଖାଲି ଚିଡ଼ୁଛନ୍ତି ! ଆମେ ଆଜ୍ଞା ସ୍ୱୈର କି ଫଣ୍ଟି ନୋହୁ ମ—ଡ଼େଲି ଆଜ୍ଞା ଲକ୍ଷଲକ୍ଷ ଲୋକ ଆନନ୍ଦ ନଗରକୁ ଆସୁଛନ୍ତି—ତାହାର କେତେବେଳେ କିଛି ଅସୁବିଧା ହେଉଛି ବୋଲି କଏ କହିବ ? ତେବେ ଆଜ୍ଞା ଭଲ ଖରାପ ସବୁ ଭାଗ୍ୟର କଥା । ଆପଣଙ୍କର ମନ ଯଦି ନିର୍ମଳ ଥିବ ଦିବ୍ୟ ଘର ପାଇବେ ......ନ ହେଲେ ଅବଧାନ୍.. କିଛି ପରବାଏ ନାହିଁ ମାଲିକ୍...... କେମିତି ହେଲେ ବ୍ୟବସ୍ଥା କରିଦାନ ? ଆପଣ ଯେତେବେଳେ ଭିକାରି ଚରଣ ସଙ୍ଗରେ ଯାଉଛନ୍ତି ମାଡ଼ାମ୍, ସିଏ ଯୋଉଠି ହଉ... ଘର ଖଣ୍ଡିଏ ମିଳିବ... ।

ବିଶ୍ୱଜିତ୍ ।। କ'ଣ କହୁଚ ମୀନା ?

ମୀନା ।। ଏତେ ବଡ଼ ସହରରେ ରହିବା ପାଇଁ ହୋଟେଲ ମିଳିବନି ?

ବିଶ୍ୱଜିତ୍ ।। ନ ମିଳିପାରେ । ଏଇତ ଦେଖିଲ ଷ୍ଟେସନ ରେଷ୍ଟ ହାଉସ କ'ଣ ? Camping Coachରେ ବି ଯାଗା ନାହିଁ । ସହର ସାରା ଦେବ ସେମିତି ହୋଇଥିବ . ?

ମୀନା ।। ତା'ହେଲେ ଆଉ କ'ଣ ହେବ ଯେ ? ଆନନ୍ଦ ନଗର ଆସି ଯଦି ଟିକିଏ ଆନନ୍ଦ ନ ମିଳିଲା···

ଭିକାର ।। ହଁ...କଥାଟା ତ ସେଇଠି ମାଡ଼ାମ ଖାଲି ତ ଆନନ୍ଦ ନଗରରେ ପହଞ୍ଚି ଗଲେ ଆନନ୍ଦ ମିଳିଯାଏ ନାହିଁ...ସେଥିପାଇଁ ଗୋଟେ ବାଲ ଦରକାର... ବିଶ୍ୱାସେ ମିଳଇ କୃଷ୍ଣ ତର୍କେ ବହୁଦୂର...ହେଃ...ହେଃ...

ମୀନା ।। (ବିଶ୍ୱଜିତଙ୍କୁ) କେତେଟା ବାଜିଲାଣି ଦେଖିଲ—ମୋ' ଘଡ଼ିଟା ବନ୍ଦ ହୋଇଯାଇଛି ।

ବିଶ୍ୱଜିତ୍ ।। ବାରଟା ବାଜିଲାଣି । କ'ଣ କରିବା କଥା ଶୀଘ୍ର ନିଷ୍ପତ୍ତି କର ।

ଭିକାରି ।। ଶୀଘ୍ର ଆସନ୍ତୁ ଆଜ୍ଞା, ଆଉ ଟିକିଏ ଡେ଼ରି କଲେ ଯାହା କୋଉଠି ଟୋକେ ବସିବା ମିଳିବା ଜିନିଷ ଅଛି ସେଇତକ ବି ଯିବ । ଏଇଟା ଆନନ୍ଦ ନଗର ସାର୍... ଏଇଠି କି ଯିଏ ଆସେ ମନରେ 'କିନ୍ତୁ' ରଖି ଆସେ ନାହିଁ । ଆଉ ଯିଏ ଆଶଙ୍କା କରି ଆସେ, ସିଏ ଏଇଠୁ ଫେରେନାହିଁ । ଜଲଦି ଚାଲିବନ ଆଜ୍ଞା—ଆମେ ଖୋଲି ନେବୁ ।

ବଣ୍ଟୁନାଥ ।। ଚାଲ, ଆଉ ଡେ଼ରି କରି କିଛି ଲାଭ ନାହିଁ ।

ଭିକାରି ।। ଆସନ୍ତୁ ସାର୍; ଧରନ୍ତୁ ସୁଟ୍‌କେଶଟା !

ବଣ୍ଟୁନାଥ । ତମେ ବ୍ୟାଗ ଆଉ ଫ୍ଲାସ୍କ ଧର । ଆଉ କ୍ୟାମେରାଟା କାନ୍ଧରେ ପକାଇ ଦିଅ

ସେମାନେ ତିନିଜଣ ବାହାରିଗଲେ ।
ମଞ୍ଚ ଅନ୍ଧାର ହେଲା । ଆନନ୍ଦ ସଂଗୀତ ।
ତା'ପରେ ରିକ୍‌ସା ଘଣ୍ଟି ଶୁଭିଲା ।

ମୀନା ।। ରାସ୍ତାଘାଟ ସବୁ ନିର୍ଜନ ହେଇଗଲଣି ।

ଭିକାରି ।। ଏଇଟା ପରା ଆଜ୍ଞା ଯାତ୍ରୀଙ୍କ ସହର । ସ୍ଥା ନଁ । ହେଲା ଆନନ୍ଦ ନଗର । ଏଇଠି ଟାଉ ଲାଗିଲେ ଭଲ । ତା' ପରେ ସବୁ ଖାଲି ।

ବଣ୍ଟୁନାଥ ।। ଏଇଟା କ'ଣ ? ଏଇଠି ଗୋଟାଏ ପାହାଡ଼ ଥିଲା ନା କ'ଣ ?

ଭିକାରି ।। ଭୂତକୋଠି ସାର୍ !

ମୀନା ।। ଭୂତକୋଠି ମାନେ ? ଏଇଠି ଭୂତ ଥିଲେ ?

ଭିକାରି ।। ଆଜ୍ଞା ବତିଶ୍ ଟାଇମ୍ ସିଏ । ଗୋଟାଏ ସାହେବ କୁଆଡେ଼ ଭୂତକୁ ନାଚୁଚି ବୋଲି ଘରେ ବନ୍ଧୁକ ଧରି ଏଇଠି ଶୋଇଲା । ଦେଖିଲେ ଆଜ୍ଞା ସିଏ ଆନନ୍ଦ ନଗର ଭୂତ ! ସାହେବକୁ ମୋଟେ ମାନିଲା ନାହିଁ । ଏମିତି ଡ଼ରେଇଲା ଯେ ସାଇବ ସକାଳୁ ରକ୍ତ ବାନ୍ତି କରି ମଲା ।

ମୀନା ।। ବୋଉ ଲୋ...ଭୂତଟା କ'ଣ ସାହେବର ତଣ୍ଟି ଚିପି ମାରିଦେଲା ?

ଭିକାରି ।। କେଜାଣି ମା ! ଆମେ କ'ଣ ଜାଣିଚୁ ? ଲୋକେ କହିବା କଥା । ଅନ୍ଧାର ଭିତରେ ଯଦି ମାଡ଼ି ବସିଥିବ । ସାହେବ କନ୍ତୁ ଗୁଳି ଚଳାଇଥିଲା, କିନ୍ତୁ ସିଏ ପରା ମା' ଭୂତ ! ଗୁଳି କ'ଣ ତା' ଧିଅରେ ବାଜିବ ? ଓଲଟି ଢାଡ ଝରକା ଗୁଡ଼ାକ ଫାଟିଗଲା । (ହଠାତ୍) ଏ ରିକ୍‌ସା ରହ । ଆଟେ ରିକ୍‌ସାକୁ ରୋକ କରଅ । ଏଇଠି ରୁହନ୍ତୁ ଆଜ୍ଞା ମୁଁ ଏଇ ହୋଟେଲ୍‌କୁ ବୁଲିଆସେ— ଜାଲେ ଯଦି ଖାଲିଥିବ ! ଏଥୁ ରିକ୍‌ସାବାଲା ! ତୋର ଯଦି ବଡ଼ ଖାଇବା କଥା କହି ଆଣ । ମୁଁ ଏଇ ହୋଟେଲ ପାଖରୁ ଆସୁଛି ।

ବିଶ୍ୱଜିତ୍ ।। ବହିଆ ପବନ ।

ମୀନା ।। ମତେ ଶୀତ ହେଲଣି ।

ବିଶ୍ୱଜିତ୍ ।। ଅନ୍ଧାର ଭିତରେ ସମୁଦ୍ରଟା କେମିତି ଦିଶୁଛି କହିଲ ?

ମୀନା ।। ଢେଉ ଗୁଡ଼ାକ ଚକ୍ ଚକ୍ କରୁଛି ।

ବିଶ୍ୱଜିତ୍ ।। ଚାଲ ଯିବା, ବାଲି ଉପରେ ବସିବା ।

ମୀନା ।। ଶୀତ ହେବ ।

ବିଶ୍ୱଜିତ୍ ।। ମୋ କୋଟ୍ ଭିତରେ ତମେ ପଶିଯିବ ।

ମୀନା ।। ରୁମ୍‌କୁ ଚାଲ । ଏଇଠି କାହିଁକି ?

ବିଶ୍ୱଜିତ୍ ।। ଏଇଠି ଥିବା ମଜା' କ'ଣ ରୁମ୍ ଭିତରେ ମିଳିବ ?

ମୀନା ।। ଜାଣିଚ ? ମୋ'ର ପିଲାଦିନରୁ ଇଚ୍ଛା ଥିଲା ବାହା ହେଲା ପରେ ହନିମୁନ୍ କରିବା ପାଇଁ ଆନନ୍ଦ ନଗରକୁ ଆସିବି ।

ବିଶ୍ୱଜିତ୍ ।। ଆଜି ତମର ସେ କଥା ପୂରଣ ହେଲା ।

ମୀନା ।। ଏଇଠିକି ଆସିବା ପୂର୍ବରୁ ଆମେ ଅନେକ ଘୁରିଛେ...କାଶ୍ମୀର—କନ୍ୟା କୁମାରୀ, ଗୋଆ, ଉଟି, ଦାର୍ଜିଲିଂ

ବିଶ୍ୱଜିତ୍ ।। ଅଜସ୍ର ପଇସା,......ସୁନ୍ଦର ଖାଦ୍ୟ......ସେକ୍ସ...

ମୀନା ।। ଆମ ଜୀବନଟା ଗୋଟାଏ ରୋମାଣ୍ଟିକ୍ ଭ୍ରମଣ କାହାଣୀ ।

ବିଶ୍ୱଜିତ୍ ।। ଅନେକ ଘୂରି ବୁଲିବା ସତ୍ତ୍ୱେ ଆମେ ଯାହା ଖୋଜୁଛେ ତାହା ମିଳନ ।

ମୀନା ।। କିନ୍ତୁ ଏବ ଲୋକଟି କହିଲା ଆମକୁ ଠିକ୍ ଜାଗାରେ ପହଞ୍ଚେଇ ଦବ ।

ବିଶ୍ୱଜିତ୍ ।। ଆଉ କ'ଣ ଯାଗାରେ ପହଞ୍ଚେଇ ଦବ ବୋଲି ଭାବୁଚ ?

ମୀନା ।। ମନ, ଆମେ କ'ଣ ଜାଣିଚେ କୋଉଟା ଠିକ ଜାଗା—?

(ଭିକାରି ଫେରି ଆସିଛି)

ଭିକାରି ।। ଯାଗା ନାହିଁ ଆଜ୍ଞା । ସବୁ ଫୁଲ୍ ।

ବିଶ୍ୱଜିତ୍ ।। ଆମପାଇଁ କେଉଁଠି ହେଲେ ଖାଲି ନାହିଁ ?

ଭିକାରି ।। ସବୁ ଆଜ୍ଞା ଭାଗ୍ୟ ! ଆପଣ ଖୁବ୍ ଦେଶୀ ଖୋଜୁଛନ୍ତି ସେଥିପାଇଁ ମିଳୁନ । ଏମିତି ବ ହୁଏ ଆଜ୍ଞା,—ମଣିଷ ଯାହା ଖୋଜେ ତାହା ମିଳେନ...ପୁଣି ନ ଖୋଜି ମଧ୍ୟ ଅନେକ ଲୋକଙ୍କୁ ଆପେ ଆପେ ମିଳି ଯାଏ...ଆଉ କେତେ

ଲୋକ ହାତ ପାଆନ୍ତାରେ ଖୋଜିବା ଜିନିଷ ପାଇ ମଧ୍ୟ ତାକୁ ହଜେଇ ଦିଅନ୍ତି । ଚାଲନ୍ତୁ ଆଜ୍ଞା । ଆଗରେ ସେଇ ଡ଼ାହାଣ ପଟ ଗଳି ଭିତରକୁ ।

(ଗୋଟାଏ ଦୁଇଟା କୁକୁର ଭୂକିବା ଶବ୍ଦ ହେଲା)

ମୀନା || ଇସ୍ ! ଏଇ ଅନ୍ଧାରୁଆ ଗଳିଟା ଭିତରେ କୁଆଡ଼େ ପୂରେଇଲ ଆମକୁ ?

ଭିକାରି || ଆପଣ ଠିକ୍ ଜାଗାରେ ପହଞ୍ଚୁଛନ୍ତି । କିଛି ବ୍ୟସ୍ତ ହେବାର ନାହିଁ ।

ବିଶ୍ୱଜିତ୍ || ଆମେ ଆଉ କେତେ ବାଟ ଯିବା ?

ଭିକାରି || ଏଇତ ପହଞ୍ଚିଗଲେ । ଆଉ ଅଳ୍ପ ବାଟ ।

[ ରିକ୍ସାର ଘଣ୍ଟି ଦୂରକୁ ଦୂରକୁ ମିଳେଇ ଗଲା ଏବଂ କ୍ରମଶଃ ଶୁଭିଲା ଫଟିକ ଦାସ୍‌ର ସ୍ୱର]

ଫଟିକ୍ || ଟିକେଟ୍ ! ଟିକେଟ୍ !; ଆଡ଼ଭାନ୍‌ସ୍ ଟିକେଟ !! ସନ୍ ଟେମ୍ପଲ୍ କୋଣାର୍କ...ନନ୍ଦନ କାନନ୍..... କେଦାର ଗୌରୀ .... ଜଗନ୍ନାଥ ଟ୍ରାନସ୍‌ପୋର୍ଟ କମ୍ପାନୀ...ଲକ୍‌ଜୁରୀ କୋଚ .. ଯିବ ଆନନ୍ଦ ନଗରକୁ .. ଟୁ ଆଣ୍ଡ ଫ୍ରୋ ...ଫିଫ୍‌ଟି ରୁପିଜ୍... ଆଡ଼୍‌ଭାନ୍‌ସ୍ ଟିକେଟ ନିଅନ୍ତୁ .. ଆଡ଼୍‌ଭାନ୍‌ସ୍ ଟିକେଟ୍...ଆଶ୍ଚର୍ଯ୍ୟ ଆଜି ବି କେହି ନାହାନ୍ତି ? ନାଁ, ମୁଁ ବୋଧହୁଏ ଜଲ୍‌ଦି ଆସିଗଲି ? କିଏ ଜାଣେ ..ଆଡ଼୍‌ଭାନ୍‌ସ ଟିକେଟ ମିଳୁଛି ବୋଲି, ଲୋକେ ଜାଣିବା ପାଇଁ ନାହାନ୍ତି !! ଲୋକ Full ହୋଇଯିବେ । ଆଉ ତା'ପରେ ଗାଡ଼ିରେ ମୋଟେ Seat ନଥିବ...... ଦେଖିବ ବହୁତ ଲୋକ ଆସି ପହଞ୍ଚିଯିବେ, ଆଉ କହିବେ ଆମକୁ ନିଅ । ହଉ ଠିକ୍ ଅଛି ବାପା ! ତମେ ଯଦି ନନ୍ଦନ କାନନରେ ପହଞ୍ଚି ନ ପାରୁଛ ସେଥିପାଇଁ କମ୍ପାନୀ ଦାୟୀ ନୁହେଁ ! ତଥାପି ଏ ଲୋକ ଗୁଡ଼ାଙ୍କୁ ଦୋଷ ଦେଇ ଲାଭ ନାହିଁ । ଯାଏ... . ଅନ୍ୟ କୋଉଠି ଲୋକେ ମତେ ଖୋଜୁଥାଇ ପାରନ୍ତି !!

[ଫଟିକ୍ ଦାସ୍ ଚାଲିଗଲା ଓ ବିଶ୍ୱଜିତ୍ / ମୀନା ମଞ୍ଚ ଉପରକୁ ଆସିଲେ]

ଭିକାରି || ଆସନ୍ତୁ । ଆସନ୍ତୁ ଭିତରକୁ । (ଘର ଭିତରେ ବେଡ଼ିଙ୍ଗ୍ ରଖି) ଦିଅନ୍ତୁ ଆଜ୍ଞା ଯୋଡ଼େ ଟଙ୍କା । ମୁଁ ରିକ୍ସାକୁ ପଇସାଟା ଦେଇ ଆସୁଛି । (ଭିକାରି ଗଲା)

ମୀନା || (ଘରଟା ଉପରେ ଆଖି ବୁଲେଇ ଆଣିଲା । ସନ୍ତୁଷ୍ଟ ନହେଲା ପରି ଜଣାଗଲା) ଆମେ ଏଇଠି ରହିବା ?

ବିଶ୍ୱଜିତ୍ || ହଇ ଏ, ଏଇଠି କ'ଣ ଆଲୁଅ ନଥିଲା ପରି ଜଣା ପଡ଼ୁଛି ।

ମୀନା ।। ଏଇଟା ଭୂତକୋଠି ନୁହେଁ ତ ?

ବିଶ୍ୱଜିତ୍ ।। କେଜାଣି ।

[ ହଠାତ୍ ଗୋଟାଏ କାଂଗ୍ରୁ କମାଗାର ବେଶରେ ବୁଲ୍‌ବୁଲ୍ ପ୍ରବେଶ କଲା, ହାତରେ ଗୋଟାଏ ଲଣ୍ଠନ । ଗୋଟାଏ ଅଂଶ ଯେମିତି ତା'ର ପଡ଼ି ଯାଉଛି । ସେ ଏକ ବଡ଼ କମ୍ବଳ ଘୋଡ଼େଇ ହୋଇଥିଲା ଏବଂ ଅନ୍ୟ ହାତରେ ଏକ ବଡ଼ ଲାଠି ଧରିଥିଲା । ତାକୁ ଦେଖି ବିଶ୍ୱଜିତ୍ ଓ ମୀନା ଚମକି ପଡ଼ିଲେ ]

ବିଶ୍ୱଜିତ୍
ମୀନା } ।। କିଏ ?

ବୁଲ୍‌ବୁଲ୍ ।। ବସନ୍ତୁ ।

ବିଶ୍ୱଜିତ୍
ମୀନା } ।। (ସେମାନେ ପଛେଇବାକୁ ବୁଝୁଁଥିଲେ ହତବାକ୍ ହୋଇ) ।

ବୁଲ୍‌ବୁଲ୍ ।। କ'ଣ ? ଡ଼ରିଗଲେ ?

ବିଶ୍ୱଜିତ୍ ।। ନା... ମାନେ ...

ବୁଲ୍‌ବୁଲ୍ ।। ଆପଣ ବିଶ୍ୱଜିତ୍ ମହାପାତ୍ର ?

ବିଶ୍ୱଜିତ୍ ।। ହଁ ।

ବୁଲ୍‌ବୁଲ୍ ।। ଆପଣଙ୍କ ନାଁ ମୀନାକ୍ଷି ?

ବିଶ୍ୱଜିତ୍ ।। ତମେ କେମିତି ଆମ ନାଁ ଜାଣିଲ ?

ବୁଲ୍‌ବୁଲ୍ ।। ଆପଣ ଉତ୍ପାତ ସହରରୁ ଆସିଛନ୍ତି ?

ମୀନା ।। ଆଶ୍ଚର୍ଯ୍ୟ !!

ବୁଲ୍‌ବୁଲ୍ ।। ଖଟ ଉପରେ ସେ କାଗଜ-ପତ୍ର ରଖନ୍ତୁ ।

ମୀନା ।। ଆମ ସମ୍ପର୍କରେ ଆଗରୁ କିଏ ଆପଣଙ୍କୁ...

ବୁଲ୍‌ବୁଲ୍ ।। ଆନନ୍ଦ ନଗରକୁ ଆନନ୍ଦ ଖୋଜି ଆସିଥିବା ଲୋକେ ଏଇଠିକି ଆସନ୍ତି ।

ମୀନା ।। ଏଇ ଘରେ ଦୁଆର ଝରକା କିଛି ନାହିଁ ?

ବୁଲ୍‌ବୁଲ୍ ।। ସେ ସବୁ ଏଇଠି ଦରକାର ହୁଏନା ।

ମୀନା    ।। ମାନେ ?

ବୁଲ୍‌ବୁଲ୍ ।। ନବୁଜ ଆନନ୍ଦ । ବାହାର ପୃଥିବୀ ଠାରୁ ବିଚ୍ଛିନ୍ନ । କେବଳ ନିଜ ଭିତରେ ନିଜ ଖୋଜିବା ପାଇଁ ଏଇ ଘର ତିଆରି ।

ବିଶ୍ୱଜିତ୍ ।। ଖଟ ଉପରେ ପଡ଼େଇବା ପାଇଁ ମ୍ୟାଟ୍ରେସ୍ ନାହିଁ ? ଖଣ୍ଡେ ଅଧେ ଡ଼ନ୍‌ଲପ୍‌ର ଗଦି ଆପଣମାନେ ରଖିବା ଉଚିତ୍ ।

ବୁଲ୍‌ବୁଲ୍ ।। (ରହସ୍ୟଜନକ ଭାବେ ହସିଲା)

ମୀନା    ।। ବିଶ୍ୱାସ କର, ଆମେ ଏୟାର୍ କଣ୍ଡିସନ୍‌ଡ୍ ଘରଛଡ଼ା ଆଉ କୋଉଠି ରହୁନୁ ।

ବିଶ୍ୱଜିତ୍ ।। ଏମିତକି ଏଇ ଟ୍ରେନ୍‌ରେ ଆସିଲାବେଳେ ବି A. C. Compartment ଛଡ଼ା ଆମେ ଆଉ କେଉଁଥିରେ travel କରିପାରୁନୁ ।

ବୁଲ୍‌ବୁଲ୍ ।। (ପୁଣି ସେହି ରହସ୍ୟ ଜନକ ହସ)

ମୀନା    ।। ତମର ଏଠିକି ସର୍ଟିଫିକେଟେଡ୍ ଲୋକ କେହି ଆସନ୍ତିନି ବୋଧେ ?

ବୁଲ୍‌ବୁଲ୍ ।। ଆପଣମାନେ ଏଇଠିକି ଆସିବା ପାଇଁ ଅନୁପଯୁକ୍ତ ।

(ଭିକାରିଚରଣ ଲଣ୍ଠନ ଗୋଟିଏ ନେଇ ଫେରିଛି)

ଭିକାରି   ।। ବୁଲ୍‌ବୁଲ୍ !

ବୁଲ୍‌ବୁଲ୍ ।। ହାଁ......!!

ଭିକାରି   ।। ମୁଁ ଠିକ୍ ଜାଗାରେ ଠିକ୍ ଲୋକଙ୍କୁ ପହଞ୍ଚେଇ ଦେଲି ।

ବୁଲ୍‌ବୁଲ୍ ।। ଏମାନେ ଏଇଠି ରହିବେ ତ ?

ଭିକାରି   ।। ବାବୁ ମାନଙ୍କ କଥା ଲାଗିଲା । ସାର୍ ! ଇଏ ହେଲା ବୁଲ୍‌ବୁଲ୍ । ଏଇ 'ଆନନ୍ଦ ନିଳୟ' ର ଜଗୁଆଳ ।

ବିଶ୍ୱଜିତ୍ ।। ଖୁବ୍ ଚଟଣୀ କକ୍‌ବକ୍ କରୁଛି ।

ବୁଲ୍‌ବୁଲ୍ ।। ଏଇଠି ଜଗି ଜଗି ପ୍ରତିଦିନ ଆପଣଙ୍କ ପରି ଅନେକ ଆନନ୍ଦ ଖୋଜୁଥିବା ଲୋକଙ୍କୁ ଦେଖିଲିଣି ଆଜ୍ଞା...ଆମେ ଏଇଠି ବାଛି ବାଛି ଲୋକଙ୍କୁ ନେଉ । ଗୋଟାଏ 'ଆନନ୍ଦ ନିଳୟ' ଖୋଲି ଦେଇଛୁ ବୋଲି ଯିଏ ଆସିବ ତାକୁ ଆମେ ରଖିପାରିବୁ ନାହିଁ—ସେଇଟା ମେଘନାଦ ସାମନ୍ତଙ୍କର ହୁକୁମ ।

ମୀନା    ।। ମେଘନାଦ ସାମନ୍ତ କିଏ ?

ବୁଲ୍‌ବୁଲ୍ ।। 'ଆନନ୍ଦ ନିଳୟର' ମ୍ୟାନେଜର ।

ବିଶ୍ୱଜିତ୍ ।। ବୁଲ, ତାଙ୍କ ସାଙ୍ଗରେ ଦେଖା କରିବା, ମୁଁ ତାଙ୍କୁ କହିବ, ଦୁଇଟା ଡ଼ନ୍ ଲପ ଗଦି ଆଉ ତକିଆ ନ ହେଲେ ରାତିଟା ଚଳି ହେବନି ।

ଭିକାରି ।। ମ୍ୟାନେଜରଙ୍କ ସଙ୍ଗେ ଦେଖା କରିବା ସହଜ କଥା ନୁହେଁ ।

ବୁଲ୍ ବୁଲ୍ ।। ତାଙ୍କ ସାଙ୍ଗରେ ଦେଖା କରିବାକୁ ହେଲେ ଏଇଠି ଅନ୍ତତଃ ଗୋଟିଏ ରାତି ଅନ୍ଧାର ଭିତରେ ଅପେକ୍ଷା କରିବାକୁ ପଡ଼ିବ ।

ବିଶ୍ୱଜିତ ।। ସିଏ ଏମିତି କଏ କି ?

ବୁଲ୍ ବୁଲ୍ ।। ଆପଣଙ୍କୁ ଦେଖିବା ପୂର୍ବରୁ-ସିଏ ଆପଣଙ୍କ ଖବର ରଖିଛନ୍ତି, ଆପଣ କହିବା ପୂର୍ବରୁ ସିଏ ଆପଣଙ୍କ ନା ଜାଣିଛନ୍ତି......ଆପଣ ଦେଖେଇବା ପୂର୍ବରୁ ସିଏ ଆପଣଙ୍କର ଭିତରଟାକୁ ଦେଖିଛନ୍ତି ।

ମୀନା ।। ସେ କଏ ?

ବିଶ୍ୱଜିତ୍ ।। ଆମେ ତ'ଣ ଜାଣିବା ପାଇଁ ବାଧ୍ୟ ? ଆମକୁ ଜାଣିବା ତାଙ୍କ ପକ୍ଷରେ ସହଜ ହୋଇପାରେ । we are important people !

ମୀନା ।। Ofcourse !

ଭିକାରି ।। ଆପଣମାନେ ରାତିରେ ଖାଇବେ କ'ଣ ?

ବିଶ୍ୱଜିତ୍ ।। ଏଇଠି ଖାଇବା ବ୍ୟବସ୍ଥା...

ମୀନା ।। ଘରଟାର ଚେହେରା କହୁଛି ଏଇଠି କ'ଣ ଖାଇବା ପାଇଁ ମିଳିବ ?

ବିଶ୍ୱଜିତ୍ ।। ତ ତ୍ତା ।

ବୁଲ୍ ବୁଲ୍ ।। ତାହା ମଧ୍ୟ ମିଳିପାରିବ ନାହିଁ । ହୋଟେଲ୍ ରୁ ଖାନା ମଗେଇବେ ।

ଭିକାରି ।। କିଛି ବ୍ୟସ୍ତ ହବାର ନାହିଁ ବାବୁଜୀ ! ମୁଁ ଯାଇ ନେଇ ଆସିବି । କୁହନ୍ତୁ ଆପଣଙ୍କର କ'ଣ ଚଳିବ ?

ବିଶ୍ୱଜିତ୍ ।। (ମୀନାକୁ) କ'ଣ ଚଳିବ ? ବିରିଆନି...ପଲଉ...ଚିକେନ୍...

ମୀନା ।। ବ୍ରେଡ୍ ଆଉ ଫ୍ରୁଟସ୍ ନେଇ ଆସିବାକୁ କୁହ ।

ବିଶ୍ୱଜିତ୍ ।। (ଟଙ୍କା ଦେଇ) ଭଲ ବ୍ରେଡ୍ ଆଉ କିଛି ଫଳ ନେଇ ଆସ ।

ଭିକାରି ।। ରାତି ସାଢ଼େ ବାରଟା ବାଜିଲାଣି ହଜୁର । ସେ ଗୁଡ଼ାକ କ'ଣ ମିଳିବ ? ରୁଟି, ଡ଼ାଲମା, ରବଡ଼ି ଯଦି କହିବେ...

ବିଶ୍ୱଜିତ୍ ।। (ବିରକ୍ତ ହୋଇ) ହଉ, ଯାହା ମିଳିବ ନେଇଆସ ।

ବୁଲ୍ ବୁଲ୍ ।। ବେଶ୍ । ସେୟା କରନ୍ତୁ ।

(ଭିକାରି ପଇସା ନେଇ ଚାଲିଗଲା)

ମୀନା    ।। ଏଥର ଆମେ ଯେଉଁଆଡ଼େ ଯିବା କିଛି Tinned Food ସାଙ୍ଗରେ ନେବାକୁ ପଡ଼ିବ ।

ବଣ୍ଡୁକିଡ଼ି ।। ଘରେ କିଛି imported ଜିନିଷ ଥିବ । ତ'ଣ ବୁଲ୍‌ବୁଲ୍ ?

ବୁଲ୍‌ବୁଲ୍ ।। ଆଜ୍ଞା !

ବଣ୍ଡୁକିଡ଼ି ।। 'ବଢ଼ିଆ ଆନନ୍ଦ ଜଳଯୋଗ' କଣଚ, ବୁଝିଲ ! ଶୋଇବା ପାଇଁ ବେଡ ନାହିଁ...ଆଲୁଅ ମଧ୍ୟ ନ ଥିଁ ।

ବୁଲ୍‌ବୁଲ୍ ।। ଆପଣ ତ ଖୋଜି ଖୋଜି ଏଠିକି ଆସିଛନ୍ତି ।

ବଣ୍ଡୁକିଡ଼ି ।। ସେ ଯାତ୍ରୀ ଗୁମାସ୍ତା ଆମକୁ ଖୁବ୍ ହଇରାଣରେ ପକେଇଲା ।

ବୁଲ୍‌ବୁଲ୍ ।। ଦେଖନ୍ତୁ, ବର୍ତ୍ତମାନ ଏଠିକି ଆସିସାରିଲା ପରେ ହଇରାଣ କଥା ଚିନ୍ତା କରି ଲାଭ ନାହିଁ ।

ମୀନା    ।। ତା' ବୋଲି ଆମେ କଣ୍ଟବୁକ ? ଏଇଟା କ'ଣ ଆମଭଳି ଲୋକଙ୍କ ପାଇଁ ରହିବା ଯାଗା ?

ବୁଲ୍‌ବୁଲ୍ ।। ଏଇଠିକି ଯୋଉମାନେ ଆସନ୍ତି ସେମାନେ ଠିକ୍ ଏମିତି କଂପଲେନ କରନ୍ତି । କିନ୍ତୁ ଆମର ମ୍ୟାନେଜର କିଛି ଶୁଣନ୍ତି ନାହିଁ ।

ମୀନା    ।। ଅନ୍ୟ ଘର ମିଳିଲେ ଆମେ କାଲି ଏଇଠୁ ଚାଲିଯିବୁ ।

ବୁଲ୍‌ବୁଲ୍ ।। କୁଆଡ଼େ ଚାଲିଯିବେ ?

ମୀନା    ।। ଅଉ ଗୋଟାଏ ଭଲ ଯାଗା, ଯୋଉଠି ମଜା କରିହେବ ।

ବୁଲ୍‌ବୁଲ୍ ।। ମଜା ? ମଜା କ'ଣ ?

ମୀନା    ।। ଆନନ୍ଦ ।

ବୁଲ୍‌ବୁଲ୍ ।। ଏଇ ଡ଼ନ୍‌ଲପ୍ ଗଦିରେ ଶୋଇ, ଚିକେନ୍ ଖାଇଲେ ଆନନ୍ଦ ମିଳେ ?

ବଣ୍ଡୁକିଡ଼ି ।। ଯାହାକୁ ଯେମିତି ଭଲ ଲାଗେ ।

ବୁଲ୍‌ବୁଲ୍ ।। ମାନେ ?

ବଣ୍ଡୁକିଡ଼ି ।। ମାନେ ଟା କ'ଣ ତମକୁ ବୁଝେଇବାକୁ ପଡ଼ିବ !

ବୁଲ୍‌ବୁଲ୍ ।। ନିଶ୍ଚୟ, ଅଲବତ୍ ବୁଝେଇବାକୁ ପଡ଼ିବ ।

ମୀନା    ।। ଆଶ୍ଚର୍ଯ୍ୟ, ତମେ ଗୋଟେ ଜଗୁଆଳ ହୋଇ ବେଶୀ ବେଶୀ କଥାବାର୍ତ୍ତା କରୁଛ !

Source: Author, Digitized by PPRACHIN, SOA

ବୁଲ୍‌ବୁଲ୍ ।। ମୁଁ ଆନନ୍ଦ ନଗରର ଜଗୁଆଳ । ଏଇଠି କାହାକୁ ଭର୍ତ୍ତି କରିବା ପୂର୍ବରୁ ପ୍ରଥମେ ପାଶ୍‌ପୋର୍ଟ ଚେକ୍ କରିଥାଏ । ଆପଣମାନେ ଆନନ୍ଦ କହିଲେ କ'ଣ ବୁଝନ୍ତି ଆମେ ଜାଣିବାକୁ ଚାହୁଁ ।

ମୀନା ।। ଆମେ କହିବା ପାଇଁ ବାଧ୍ୟ ନୋହୁଁ ।

ବୁଲ୍‌ବୁଲ୍ ।। ମୁଁ ଗୋଟାଏ ଚୌକିଦାର ବୋଲି ମତେ ଆପଣ କହିବାକୁ ଚାହୁଁ ନାହାଁନ୍ତି । କିନ୍ତୁ ମେଘନାଦ ସାମନ୍ତ ଯେତେବେଳେ ସେଇ ପ୍ରଶ୍ନଟା ପଚାରିବେ ?

ବିଶ୍ୱଜିତ୍ ।। ଆମେ କ'ଣ ତମ ମେନେଜରଙ୍କର ଚାକର ? ଏଇ ଯେଉଁ 'ଆନନ୍ଦ ନଗର' କରିଛ ସେମିତି ପାଞ୍ଚଶହ କୋଠା ଆମର ଅଛି । ଏଇଠିକି ଆମେ ବୁଲିବା ପାଇଁ ଆସିଛୁ ବୋଲି ଭାବନ୍ତି ଆମେ ତମ ମେଘନାଦ ସାମନ୍ତର ପ୍ରଜା । ପୃଥିବୀରେ ଏମିତି ଯାଗା ନାହିଁ ଯୋଉଟା ଆମେ ନ ଦେଖିଛୁ ! ଆମ ଘରେ ଟୁଥବ୍ରସ୍‌ଠାରୁ ଆରମ୍ଭ କରି ନେଲ ପଲିସ ପର୍ଯ୍ୟନ୍ତ ସବୁ ଜିନିଷ ଇମ୍ପୋର୍ଟେଡ୍ । ଆମ ଫାମିଲିର ଚାରି ଚାରି ଜଣ ପାର୍ଲିଆମେଣ୍ଟରେ ଅଛନ୍ତି । ବର୍ତ୍ତମାନ ମୁଁ ଚାହିଁଲେ ଆନନ୍ଦ ନଗରରେ ଗୋଟାଏ ପରମାନେଣ୍ଟ ଘର ତୋଳିଦେଇ ପାରିବି । ଏଇଠୁ ଫୋନ୍ କଲେ ଆମ ପାଇଁ ଏ ସହରର ସବୁ ଆନନ୍ଦ ରିଜର୍ଭ ହୋଇଯିବ ।

ବୁଲ୍‌ବୁଲ୍ ।। (ହଠାତ୍ ପେଟଟାକୁ ଭିଡ଼ି ଧରି) ଓଃ !

ମୀନା ।। ହେ...ଯ୍ୱାର ପୁଣି କ'ଣ ହେଲା...

ବୁଲ୍‌ବୁଲ୍ ।। ଓଃ !!

ବିଶ୍ୱଜିତ୍ ।। କ'ଣ ହେଲା ?

ବୁଲ୍‌ବୁଲ୍ ।। ମରିଗଲି...ଓଃ !

ମୀନା ।। କଲିକ୍ ପେନ୍ ହଉଥିବ !

ବୁଲ୍‌ବୁଲ୍ ।। (ମୁଣ୍ଡ ହଲାଇ ମନାକଲା) ନା...ମୂଷାଟେ...

ବିଶ୍ୱଜିତ୍ ।। କାହିଁ ? କାହିଁ ମୂଷା ? (ଖୋଜିବାକୁ ଲାଗିଲେ)

ମୀନା ।। ମୂଷା କାମୁଡ଼ି ଦେଲା ! ଇସ୍ ଏଇଟା ଯୋଉ ବାଜେ ଘର ହୋଇଛି ..

ବୁଲ୍‌ବୁଲ୍ ।। ନା, ମୂଷା ଏଇଠି ନାହିଁ !

ମୀନା ।। କୁଆଡେ଼ ଗଲା ?

ବୁଲ୍‌ବୁଲ୍ ।। (ପେଟକୁ ଦେଖାଇ) ଏଇଠି !

ବିଶ୍ୱଜିତ୍ ।। କୋଉଠି ?

ବୁଲ୍‌ବୁଲ୍ ।। (ପୁଣି ପେଟକୁ ଦେଖାଇ) ଏଇଠି ।

ମୀନା ।। (ହଠାତ୍ ହସି ପକାଇ) ମୂଷାଟା ତମ ପେଟ ଭିତରେ ପଶିଗଲା ?

ବୁଲ୍‌ବୁଲ୍ ।। ହଁ ।

ବିଶ୍ୱଜିତ୍ ।। ହଁ ?

ବୁଲ୍‌ବୁଲ୍ ।। ହଁ ।

ବିଶ୍ୱଜିତ୍ ।। ଆଶ୍ଚର୍ଯ୍ୟ ! କି ଅଦ୍ଭୁତ ଲୋକ ତମେ...ଭଲ ଡ୍ରାମା କରୁଛ ।

ମୀନା ।। ମୂଷାଟା ପେଟ ଭିତରେ ପଶିଗଲା...(ପୁଣି ହସିଲା)

ବୁଲ୍‌ବୁଲ୍ ।। ଅନେକ ସମୟରେ ଏମିତି ମୋ ପେଟ ଭିତରେ ମୂଷାଟେ । ପଶିଯାଏ ମୋ' ବ୍ଲଡପ୍ରେସର ଓ ବାତରୋଗ ଯେତେବେଳେ ଅସ୍ୱାଭାବିକ ହୋଇଯାଏ— ଦୁର୍ଦ୍ଦିଗ୍ରସ୍ତ ହୋଇଯାଏ...ଠିକ୍ ସେତିକିବେଳେ...

[ ଭିକାରି କାନ୍ଥ ଖୋଳିବା ସ୍ପାଡେଟ୍ ନେଇ ଫେରୁଛି ଗୀତ ଗାଇ ଗାଇ ]

ଭିକାରି ।। କ'ଣ ହେଲା ?

ମୀନା ।। ମୂଷାଟେ ପେଟ ଭିତରେ ପଶିଗଲା (ମୀନା ହସିଲା)

ଭିକାରି ।। କାହିଁକି କହୁଛନ୍ତି ବାବୁଜୀ...ଏଇ ବୁଲ୍‌ବୁଲ୍ କାଠି ଆଉ କଥାଟି ? ଘୋର ଦୁର୍ଭାଗ୍ୟ । (ତା' ପାଖକୁ ଯାଇ ତା' ପେଟ ଆଉଁସିଲା)

ବୁଲ୍‌ବୁଲ୍ ।। ଘସି ଝେପ୍ପାଡ ଭଲଣି ।

ଭିକାରି ।। ମୁଁ ନଥିବା ଅବସ୍ଥାରେ ?

ବୁଲ୍‌ବୁଲ୍ ।। ହଁ । ଓଃ !!

ଭିକାରି ।। ଆପଣ ଯେମିତି କ'ଣ ଗୋଟେ ଆନନ୍ଦ ଖୋଜି ଖୋଜି ଏଇଠିକି ଆସିଛନ୍ତି ବାବୁଜୀ, ଏଇ ବୁଲ୍‌ବୁଲ୍ ମଧ ଦିନେ ସେମିତି ଏଇଠି ପହଞ୍ଚି-ଥିଲା । ମେଘନାଦ ସାମନ୍ତ ତାକୁ ବସେଇ ଦେଇଥିଲେ ଗୋଟେ ବାର୍ଣ୍ଣି ମୂଣ୍ଡରେ । କହିଥିଲେ—ଏଇଠି ଅପେକ୍ଷା କରିଥା' । ଆନନ୍ଦ ତା' ଭିତରୁ ଝରିବ । ଏଇ ବୁଲ୍‌ବୁଲ୍, ଅବଧାନ, ସେଇଠି ଆଁ କରି ବସିଥିଲା । ତା'ର ଭିତରୁ, ଅବଧାନ, ମୂଷାଟା...ଚୁଟିଆ ମୂଷାଟେ ହଠା କି କ'ଣ, ସେଇ ପାଟିବାଟେ ଚାଲିଯାଇ ପେଟଭିତରେ ଗାତ ଖୋଳି ଦେଇଛି ।

ବୁଲ୍‌ବୁଲ୍ ।। ଅନ୍ତବୁଜୁଳା, କଲିଜା, ଯକୃତ, ପ୍ଳୀହା ସବୁ କାଟି ପକେଇଲା ।

ମୀନା ।। କ'ଣ ସତ ନା ଥଟ୍ଟା କରୁଛ ଯେ...?

ବୁଲ୍‌ବୁଲ୍ ॥ ମୂଷାଟିକୁ ଆପଣ ଏଇନେ ଚହ୍ନି ପାରିବେ ହଜୁର । ଆଜି ରାତିଟା ଏଇଠି ରହିଗଲେ ଠିକ୍ ବୁଝାପଡ଼ିଯିବ ।

ମୀନା ॥ ଏଃ ! ଶୁଣୁଚ...

ବିଶ୍ୱଜିତ୍ ॥ ହଁ ।

ମୀନା ॥ କ'ଣ ?

ବିଶ୍ୱଜିତ୍ ॥ ଏ ଘରେ ଅନେକ ମୂଷା ।

ମୀନା ॥ ଆମେ ଏଇଠି ରାତିରେ ରହିବା ତ ?

ବିଶ୍ୱଜିତ ॥ ଡ଼ରିଗଲ କି ? ନାଇଁମ...ମୂଷାଟା ତମ ପେଟ ଭିତରେ ପଶିବନି !

ଭିକାରି ॥ କ'ଣ ଟିକିଏ ଭଲ ଲାଗୁଛି ବୁଲ୍‌ବୁଲ୍ ?

ବୁଲ୍‌ବୁଲ୍ ॥ ସାମାନ୍ୟ । ଏତିକି ବେଳକୁ ମୂଷାଟା ଟିକିଏ ଥୟ ଧରି ବସିଚି ।

ଭିକାରି ॥ ଯାଅ ଯାଅ— ଟିକିଏ ବିଶ୍ରାମ କରିବ ଯାଅ । ମୂଷାଟା ପୁଣି ଯଦି ଡ଼ିଆଁ ଡେଇଁ କରେ...ବାବୁଙ୍କୁ କ'ଣ ଦେଲଟି ?

ବୁଲ୍‌ବୁଲ୍ ॥ କ'ଣ କୋଉଠି ଦେଲି ?

ଭିକାରି ॥ ଏଃ ! ତମେ ଯା' ବୁଝି ବୁଲ୍‌ବୁଲ୍...ଆରେ ବାବୁମାନେ କି ଭଲଆ ଜିନିଷ ଖୋଜିବାକୁ ଆସିଛନ୍ତି,...ମୁଣ୍ଡ ଗରମ ହେବାର ବହୁତ ଚାନ୍‌ସ ଅଛି...ଯାଅ—ଯାଅ

ବୁଲ୍‌ବୁଲ୍ ॥ ଯାଉଛି, ଯାଉଛି । ଏଇ ମୂଷାଟା ପରା ସବୁ ଗୋଳମାଳ କରିଦେଲା ।

[ ବୁଲ୍‌ବୁଲ୍ ତା'ର ଅଦ୍ଭୁତ ଢଙ୍ଗରେ ପ୍ରସ୍ଥାନ କଲା ]

ଭିକାରି ॥ ଏଇ ପାଖ ଦୋକାନରୁ କିଛି ପାଉଁରୁଟି ଆଉ ଅଣ୍ଡାସିଝା ନେଇ ଆସିଛି ବାବୁଜୀ, ଏଇଥିରେ କାମ ଚଳିବ ନା ଆଉ କିଛି ଆଣିବି ? ଟିକିଏ ଦୂରକୁ ଗଲେ ଚିକେନ୍, ତନ୍ଦୁରୀ ଆଉ ନାନ୍ ମିଳିବ ।

ବିଶ୍ୱଜିତ୍ ॥ ଯାଅ ନେଇ ଆସିବ ଯାଅ— (ବାକ୍‌ସ୍ ଖୋଲିବାକୁ ଲାଗିଲେ)

ମୀନା ॥ ଏଇ ଘରେ ବାଥରୁମ୍ ଅଛି ତ ?

ଭିକାରି ॥ ଅଛି ଆଜ୍ଞା । ଏଇ ସେଇ ବାଁ ପଟେ । ଆଉ ଏଇଟା ଉପରକୁ ଯିବାପାଇଁ ବାଟ । ଉପରୁ ସମୁଦ୍ର ଦେଖିବାକୁ ଖାସା ଦିଶିଥାଏ ।

ମୀନା ॥ ଆଚ୍ଛା, ଏଇଠି ରହିଲେ କିଛି ବିପଦ ନାହିଁ ତ ?

ଭିକାରି ॥ ବିପଦ ଆଉ କ'ଣ ? ଏ ତ୍ରିଶବର୍ଷ ତଳେ କଲିକତା ନକ୍ସାଲ୍ ମାନେ ଆସି ଏଇଠି ଖୁବ୍ ଜାଲିଆତି କରୁଥିଲେ । ଅଜିକାଲି ଆଉ ନାହାନ୍ତି । ଏଇ ଯୋଉ ଏମର୍ଜେନ୍ସୀ ହୋଇଥିଲା ମା'...ସେଇଥିରେ ସବୁ ଓବ୍ସାଙ୍ଗ୍ ହୋଇଗଲେ !

ମୀନା ॥ କେଜାଣି ବାବା !

ଭିକାରି ॥ ଏଇଥିରେ ତ ଆପଣ ଡରୁଛନ୍ତି ମା' ! ଆଗରୁ ଏଇ ଅଞ୍ଚଳଟା ଖାଲି ଜଙ୍ଗଲ ଥିଲା । ଆମେ ପିଲାବେଳେ ଦେଖିଛୁ, ଏଇଠି ବିଦେଶୀ ବଙ୍ଗାଳୀଙ୍କ ଛଡ଼ା ଆଉ କାହାରି ଘର ନଥିଲା । ଖାଲି ବାଲି ଆଉ ଜଙ୍ଗଲ ! ସାପ ଜନ୍ତୁଜାନୁ ଥିଲେ ଏଇଠି !

ମୀନା ॥ ସାପ ?

ଭିକାରି ॥ ଏଇଠି ତ ବିଲୁଆ, ଗଧିଆଙ୍କର ମେଳା ହଉଥିଲା ମା' ! ଆଗରୁ ଥରେ ଯୋଉ ସୀମା ଆନ୍ଦୋଳନ ହୋଇଥିଲା ?

ମୀନା ॥ କେଜାଣି ମୁଁ ଜାଣିନି ।

ଭିକାରି ॥ ଆପଣ ସେତିକିବେଳକୁ ଜନ୍ମ ହୋଇନଥିବେ । ସେତିକିବେଳେ ଆମେ ଭମ୍ କାଣ୍ଡ କରିଛୁ ଆଜ୍ଞା—ଆନ୍ଦୋଳନ ସରିଲା ପରେ ସମୁଦ୍ର ବାଲିରୁ ପନ୍ଦର ଖଣ୍ଡ ହାଇଡ୍ରୋଜେନ୍ ଖୋଳା ହୋଇ ବାହାରିଥିବ । କୂଅ ଭିତରୁ ସାଇକେଲ ବାହାରିଲା । ପୋଲିସ ଯୋଉ ଲୁଟତରାଜ କଲା ଆଜ୍ଞା ସେଇ ମାଡରେ ସବୁ ଆଜ୍ଞା ଦି' କୁଡ଼ିଟା ପୋଲିସି ମଣିଷ ହୋଇଗଲେ । ଆମେ କିନ୍ତୁ ଆଜ୍ଞା କରାମତି ଦେଖେଇ ଦେଲୁ । ସେ ଯୋଉ ଲୁହାବୁହା ଗ୍ୟାସ୍ ଛାଡ଼ୁଥାଏ ପୋଲିସି...ଆମେ ସେଇଟାକୁ ଗୋଟେଇ ଫେରେଣ ତା' ଉପରକୁ ଫୋପାଡ଼ି ଦେଉ । ସେଥିରୁ ପୋଲିସ୍ ଗୁଳି ଚଳେଇଲା । ଆମେ ତ ଆଜ୍ଞା ଦୌଡ଼ିଲୁ ! ପୋଲିସି ଗୋଡ଼େଇଛି—ଆମେ ଦୌଡ଼ିଛୁ—ସେଇଠୁ ହେମିତି ଏ ଅଞ୍ଚଳରେ ହେଇଥିଗଲୁ—ଆଉ ପୋଲିସ୍ ର ଦମ ପାଇଲାନି !

ବିଶ୍ଵଜିତ୍ ॥ ଏଇଠି କ'ଣ ଖୁବ୍ ଗୁଣ୍ଡା ଅଛନ୍ତି ।

ଭିକାରି ॥ ଗୁଣ୍ଡା କ'ଣ ଆଜ୍ଞା ? ଆନନ୍ଦ ନଗର ଇଏ । ଆପଣମାନଙ୍କ ଭଳି ବହୁତ ଲୋକ ବିଦେଶରୁ ଆସନ୍ତି ମନ-ମଉଜ ପାଇଁ । ଗୁଣ୍ଡାଗିରି କଲେ ଚଳିବ ? ତେବେ ଗୋଟାଏ କଥା ଅବଧାନ୍ ଯୋଗା—ଅକ୍ଟେଡ଼'ର ସହର ଇଏ । ହେଲେ ସେତିକି ବେଳର ଲୋକ ଆଉ ନାହାନ୍ତି ? ଗୋଟେ ଗୋଟେ ଲୋକ ଛ' ଛ' ଫୁଟ ଲମ୍ବା...ପାଏ ଗୁଆଡିଥ, ଦେଢ଼ସେର ଲୁହାଲର ଅରୁଆ ଅନ୍ନ ଏକା

ଏକା ଉଡ଼େଇ ଦେବା ଲୋକ ଏମାନେ......ଆଜ୍ଞା ସେ କଥା କ'ଣ ଶୁଣିବେ ? ଖୋଳ ଘରେ ଡାଲମା, ଘିଅ, । ଅନ୍ନ ଖୁଣ୍ଟି ଖୁଣ୍ଟି ଗୋଟାଏ ଖାଇଯାଆନ୍ତି ପାର...

ମୀନା ।। (ବିଶ୍ୱଜିତ୍‌କୁ) ଏଇ ଘରେ ତ ଆଲୁଅ ନାହିଁ । ସ୍ୱାମୀଙ୍କ କହିବା ଆଜି ରାତିଟା ସେ ଏଇଠି ରହିଯାଆନ୍ତୁ ।

ଭିକାରି ।। ଆପଣଙ୍କର କିଛି ଅସୁବିଧା ହେବନି ମା' । ଆପଣ ଭିକାରିଚରଣର ଲୋକ, ପୁଣି ଆପଣଙ୍କର ଅସୁବିଧା ହେବ ବୋଲି ଡରୁଛନ୍ତି ? (ବାହୁ ଦେଖାଇ) ଦେଖୁଛନ୍ତି ଆଜ୍ଞା, ଏଇ ଭୂତ ଉପରେ ଦଶ ଟେଙ୍କ ଫାଶି । ବସିଛି ବାବୁଜୀ, ହେଲେ ହାତଟା ସେମିତି ଅଛି । ଏକା ଏକା ହାତଟା ଟୋକା ଯଦି କବଜ୍ ହେଇ ନ ପାରିଲେ ତା'ହେଲେ ଆଉ ଯାତ୍ରୀ ବ୍ୟବସ୍ଥା କରିବ କାହିଁକି ? ଏ ସହରରେ ବାବୁଜୀ, ଭିକାରିଚରଣର ଗୋଟେ ଖାତିର ଅଛି । ହଉ ବାବୁ, ଆପଣ ଧୁଆଧୋଇ ହୁଅନ୍ତୁ । ମୁଁ ଯାଉଛି ହୋଟେଲ୍‌ଟା ମୋର ସେ ପଞ୍ଜାବୀ ହୋଟେଲ୍‌କୁ ଆପଣଙ୍କ ଖାଇବାଟା ନେଇ ଆସେ ।

[ ଭିକାରି ଗଲା । ମୀନା ପଛକୁ ଚାହିଁଲା ଦେଖିଲା ବିଶ୍ୱଜିତ୍ ବାକସ୍ ଖୋଲି ଗୋଟିଏ ବୋତଲରୁ ହ୍ୱିସ୍କି ଢାଳୁଛି ।

ବିଶ୍ୱଜିତ୍ ।। ଏଇ ବୋତଲଟା ଶେଷ ।

ମୀନା ।। ସକାଳୁ ଏଇ ବଜାରରୁ ନେଇ ଆସିବ ।

ବିଶ୍ୱଜିତ୍ ।। (ଗ୍ଲାସ ବଢ଼ାଇ) ନିଅ । (କେନେ ପିଇଲେ)

ମୀନା ।। ଖାଇବା ଜିନିଷ ଆଣ ।

ବିଶ୍ୱଜିତ ।। ଆମର ସରିଲା ବେଳକୁ ଖାଇବା ଜିନିଷ ଚାଲି ଆସିବ ।

ମୀନା ।। ଚିଅର୍ସ !

ବିଶ୍ୱଜିତ ।। ଚିଅର୍ସ !

ମୀନା ।। ଆଉ ତ କିଛି ମିଳିଲା ନାହିଁ, ଯାଉ ଭିତରେ ଆନନ୍ଦ ମିଳିଯାଉ ।

ବିଶ୍ୱଜିତ ।। ଅନ୍ତତଃ ଏଇ ପୁରୁଣା ଅପରିଚ୍ଛନ୍ନ ଘରଟାକୁ ଭୁଲିଯିବା ପାଇଁ ।

ମୀନା ।। ଅନ୍ତତଃ ଭଲ ନିଦଟେ ହୋଇଯିବ ।

ବିଶ୍ୱଜିତ୍ ।। ତମେ ତ ମୋର ସବୁ ଆନନ୍ଦର କେନ୍ଦ୍ର ।

ମୀନା ।। ଆଜି ଆମ ବାହାଘରର ଠିକ୍ ମାସେ ପୁରିଲା ।

ବିଶ୍ୱଜିତ୍ ।। ମାଷ୍ଟର ଠିକ୍ ବନେ ପରି ଲାଗୁଛି ।
ମୀନା ।। ବନଗୁଡ଼ା ସବୁ ଯାଇ ସ୍ୱପ୍ନ ହୋଇଯାଉଥାନ୍ତା । ଭଲ ହୁଅନ୍ତା ।
ବିଶ୍ୱଜିତ୍ ।। ଏବଂ ସ୍ୱପ୍ନ ଗୁଡ଼ାକ ନିଶା ।
ମୀନା ।। ତା'ର ଭିତରେ ତମେ ଖାଲି ବୁଡ଼ି ରୁହନ୍ତ ।
ବିଶ୍ୱଜିତ୍ ।। ହଁ ।
ମୀନା ।। ଅଦ୍ଭୁତ !

(ହଠାତ୍ ଭିତରୁ ଶୁଭିଲା)

ଭିତର ଲୋକ ।। Your attention please !
ଇଷ୍ଟାନ୍ତ ସହରରୁ ଆସିଥିବା : ଆନନ୍ଦ ଗୋଲାକୀମାନେ ! Your attention please ! 'ଆନନ୍ଦ ନଗର'ରେ କେହି ନିଶାସକ୍ତ ହୋଇ ପାରିବେ ନାହିଁ । ମୁଁ ଭାବେ ଆନନ୍ଦ ଏକ ସ୍ୱତନ୍ତ୍ର ନିଶା ଏଇଠି ରହିବା ଅର୍ଥ ଆନନ୍ଦର ସାନ୍ନିଧ ପାଇବା ।

[ ବିଶ୍ୱଜିତ୍ ଓ ମୀନା ଅବାକ୍ ହୋଇ ପରସ୍ପରକୁ, ଚାହିଁ ରହିଲେ ]

ମୀନା ।। କିଏ କହିଲା ? (ବିଶ୍ୱଜିତ୍ ନିରୁତ୍ତର) ମୁଁ ପଚାରୁଛି କିଏ ଏଇ ଘୋଷଣାଟି କଲା ?
ବିଶ୍ୱଜିତ୍ ।। କିଏ ହୋଇପାରେ ?
ମୀନା ।। ମୁଁ ଭାବୁଛି ଏଇଠି କିଛି ଗୋଟାଏ ବିପଦ ଘଟିବ !
ବିଶ୍ୱଜିତ୍ ।। ହେଃ ! ଏମିତି ଅନେକ ଲୋକ ଅଛି ଯୋଉଠି ମାଲ୍ ପିଇବା ମନା !

[ବୁଲ୍ ବୁଲ୍ ଗୋଟାଏ ଟ୍ରେରେ ଚା' ନେଇ ପହଞ୍ଚିଲା]

ବୁଲ୍ ବୁଲ୍ ।। ଏଇ ନିଅନ୍ତୁ ଚା' ।
ବିଶ୍ୱଜିତ୍ ।। ଧନ୍ୟବାଦ । ଆମର ଚା' ଦରକାର ନାହିଁ ।
ବୁଲ୍ ବୁଲ୍ ।। ମୋର କହୁଁ ଆପଣଙ୍କୁ ଚା' ପିଲେଇବା ଦରକାର ।
ମୀନା ।। ଆମେ ଚା' ପିଇବୁ ନାହିଁ ।
ବୁଲ୍ ବୁଲ୍ ।। ମୁଁ ଅଣିଛି ମାନେ ଆପଣ ଚା' ପିଇବା ପାଇଁ ବାଧ୍ୟ ।
ବିଶ୍ୱଜିତ୍ ।। କ'ଣ କହିଲ ?

ବୁଲ୍‌ବୁଲ୍‌ ।। ମୁଁ କହୁନାହିଁ ହଜୁର । ମୁଁ ତ ମାତ୍ର ଗୋଟିଏ ନଗୁଆଳ । ଏଇଟା ମେଘନାଦ ସାମନ୍ତଙ୍କର ଆଦେଶ ।

ବିଶ୍ୱଜିତ୍‌ ।। ଆମେ ଯଦି ସେ ଆଦେଶ ଅମାନ୍ୟ କରୁ ?

ବୁଲ୍‌ବୁଲ୍‌ ।। ଦେଖନ୍ତୁ, ଆପଣମାନେ ଟିକିଏ ଆନନ୍ଦ ପାଇବା ପାଇଁ ଆସିଛନ୍ତି— ଏଇଠି ଗଣ୍ଡଗୋଳ କରିବା ପାଇଁ ଲୁହେଁ ନଅନ୍ତୁ—ଏମିତି ବ୍ଲ' ଆପଣ ଜିନ୍ଦେଗୀରେ ପିଇନଥିବେ !

ମୀନା ।। ଏମିତି ଲଙ୍କଂ କହୁ ଆମେ ଜିନ୍ଦେଗୀରେ ଦେଖିନାହୁଁ !

ବୁଲ୍‌ବୁଲ୍‌ ।। ଏମିତି ଲଙ୍କଂ ତ ପୃଥିବୀରେ ଏଇଟା ଗୋଟିଏ ମାତ୍ର । (ବଜ୍ରକଣ୍ଠରେ ଆଦେଶ୍ନିକଳଭଳି) ନଅନ୍ତୁ; ଶୀଘ୍ର ବ୍ଲ'ଟା ପିଅନ୍ତୁ ।

ବିଶ୍ୱଜିତ୍‌ ।। (ଅନ୍ୟ ଉପାୟ ନ ଦେଖି) ବ୍ଲ'ଟା ନେଇ ଆସ ମୀନା । କଥା କ'ଣ କି ମି. ବୁଲ୍‌ବୁଲ୍‌ ! ଏଇମାତ୍ର ମୁଁ ଟିକିଏ ହ୍ୱିସ୍କି ପିଇଛି ।

ବୁଲ୍‌ବୁଲ୍‌ ।। ହ୍ୱିସ୍କି ଟା ଇମ୍ପୋର୍ଟେଡ୍‌ ?

ମୀନା ।। ଆମେ କୌଣସି ଦେଶୀ ଜିନଷ ବ୍ୟବହାର କରୁନୁ ।

ବୁଲ୍‌ବୁଲ୍‌ ।। ଖାଲି 'ଆନନ୍ଦ' ବୋଲି ଯୋଉ ଶବ୍ଦଟା ବ୍ୟବହାର କରୁଛନ୍ତି ସେଇ ଟୋଟାକ ଦେଶୀ...ମାନେ ଖାଲି ଭାଷାଟା ଦେଶୀ !! ଏଇଟା ଦେଶୀ ବ୍ଲ' ...ବିଦେଶୀ ମାଲ୍‌ ପରେ ଏଇଟା ଠିକ୍‌ କାମ କରିବ !

ବିଶ୍ୱଜିତ୍‌ ।। ଦେଖ ଦୁଇଶହ ଟଙ୍କାର ନିଶାଟାକୁ ଆଠଣାର ବ୍ଲ' ଦେଇ ନଷ୍ଟ କରିବାକୁ ଯଦି ଚାହୁଁଚ...ବ୍ଲ'ଟା ନଅ ମୀନା !

[ମୀନା ବୁଲ୍‌ବୁଲ୍‌ଠୁ ଟ୍ରେ'ରୁ ବ୍ଲ' କପ୍‌ ଟା' ନେଲା]

ବୁଲ୍‌ବୁଲ୍‌ ।। ଏଇ ବ୍ଲ' ପାଇଁ କୌଣସି ପଇସା ଦେବାକୁ ପଡିବ ନାହିଁ । ମୋଟାମୋଟି କଥା ମେଘନାଦ ସାମନ୍ତଙ୍କର ପଇସା ସହ କୌଣସି ସମ୍ପର୍କ ନାହିଁ ।

ବିଶ୍ୱଜିତ୍‌ ।। ଧନ୍ୟବାଦ ।

ମୀନା ।। ନଅ, ଇସ୍‌ !, ବ୍ଲ'ର ରଙ୍ଗଟା ଏମିତି କ'ଣ ?

ବିଶ୍ୱଜିତ ।। କାହିଁ ଦେଖେ—

ବୁଲ୍‌ବୁଲ୍‌ ।। ବ୍ଲାକ୍‌ ଟି । ଏଇଟା ହେଲା କଳା-ବ୍ଲ'

ମୀନା ।। ସ୍ପେଶାଲ୍‌ ଟାଇପ୍‌ !

ବୁଲ୍‌ବୁଲ୍‌ ।। ଆନନ୍ଦ ନଗରୀ ଟାଇପ୍‌ ! ବ୍ଲ'ଟା ଆନନ୍ଦ ଖୋଜୁଥିବା ଲୋକଙ୍କର ନିଶା ଛଡେଇବା ପାଇଁ ଇସ୍ପେଶାଲ୍‌ ମାର୍କା ହଜୁର ! କାରଣ ଗୋଟାଏ ନିଶା

ନ ଛୁଇଁଲେ ଅନ୍ୟ ନିଶା ଧରିବନି......ମାନେ ଜାଣି ହବନି କୋଉଟା କ'ଣ ..

ମୀନା ।। ତମକୁ ଟ୍ୱ ତିଆରି କରି ଆସେନା— ଆଚ୍ଛା ଏଥିରେ ଆଉ କିଛି ମିଶିନି ତ ?

ବୁଲ୍‌ବୁଲ୍ ।। 'ଆନନ୍ଦ ନିଳୟ'ରେ ବିଷ ନାହିଁ । ଏଇଠି ସବୁ ଅମୃତ । ତେଣୁ ମରିବା ପାଇଁ ଡରନ୍ତୁ ନାହିଁ ।

ବିଶ୍ୱଜିତ୍ ।। ଆରେ ନା—ନା—ତମେ ସେମିତି କାହିଁକି ଭାବୁଛ ?

ବୁଲ୍‌ବୁଲ୍ ।। ତା ହେଲେ ପିଅନ୍ତୁ । ଡ଼ରି କାହିଁକି ?

ବିଶ୍ୱଜିତ୍ ।। ପିଅ ମୀନା !

ମୀନା ।। ତମେ ଚାଖିଲ ! ତମେ ଯାଅ ବୁଲ୍‌ବୁଲ୍ । କପ୍‌ଟା ପରେ ନେଇଯିବ !

ବୁଲ୍‌ବୁଲ୍ ।। ପିଅନ୍ତୁ । ମୋ' ଆଗରେ ଆପଣମାନଙ୍କୁ ପିଇବାକୁ ପଡ଼ିବ । ପିଅନ୍ତୁ ୱାନ୍ . ଟୁ...ଥ୍ରୀ !!

[ ବିଶ୍ୱଜିତ୍ ଓ ମୀନା ପରସ୍ପରଙ୍କୁ ଉତ୍‌କଣ୍ଠାର ସହିତ ଅନାଇ, ମନରେ ଅନେକ ଶଙ୍କା ନେଇ ଥରି ଥରି ଟ୍ୱ'ଟା ପିଇବାକୁ ଆରମ୍ଭ କଲେ ]

ଟ୍ୱ'ଟାକୁ ଆଲୁଅରେ ଦେଖନ୍ତୁ । ଦେଖିବେ ତା'ର ରଙ୍ଗ କିଛି ନାହିଁ । ଜମ୍ମା ସବୁ ଗୁଡ଼ାକ ରଙ୍ଗ ସେଇ ଟ୍ୱ' ଭିତରେ ମିଶି ଯାଉଛି । ଅନେକ ଦିନ ତଳେ ମୁଁ ଟ୍ୱ' ତିଆରିକରି ଏଇଠିକି ଆସୁଥିବା ଅନେକ ଲୋକଙ୍କୁ ସନ୍ତୁଷ୍ଟ କରିଛି । ଏଇ ସ୍ୱାଦର ଟ୍ୱ' କେତେବେଳେ କଳା ଫୁଲିଆ ତ କେତେବେଳେ ଚମ୍ପା ଫୁଲିଆ — ଆହୁରି ଅନେକ ରଙ୍ଗର ଟ୍ୱ' ଅଛି । ଗୋଲାପ, ଗେରୁଆ, ମେରୁନ୍...ଆଜିର ଟ୍ୱ'ଟା କିନ୍ତୁ କଳା । ଚୋଳିଆ ଧଳା କପ୍‌ଟା ଭିତରେ ପୁଣି କାଳିଆ ଟ୍ୱ'—

ବିଶ୍ୱଜିତ୍ ।। ତମ ମ୍ୟାନେଜରଙ୍କୁ ଟିକିଏ ଡ଼ାକିଦେବ...

ବୁଲ୍‌ବୁଲ୍ ।। ମେଘନାଦ ସାମନ୍ତ ପୂଜାରେ ବସିଛନ୍ତି ।

ମୀନା ।। ଏଇ ରାତି ଅଧରେ ?

ବୁଲ୍‌ବୁଲ୍ ।। ପ୍ରତି ସନ୍ଧ୍ୟାରେ ମେଘନାଦ ସାମନ୍ତ 'ଆନନ୍ଦ ନିଳୟ'ର ଅଗଣାରେ ଥିବା ସୁଡ଼ଙ୍ଗ ପାଖରେ ବସି ପୂଜା କରନ୍ତି ।

ବିଶ୍ୱଜିତ୍ ।। କ'ଣ ତନ୍ତ୍ର-ସାଧନା ?

ବୁଲ୍‌ବୁଲ୍ ।। ପୃଥିବୀରେ ସମସ୍ତେ କିପରି ଆନନ୍ଦରେ ରହନ୍ତୁ, ସେଥିପାଇଁ !

ବିଶ୍ୱଜିତ୍ ।। ତାଙ୍କର କ'ଣ କେହି ନାହାନ୍ତି !

ବୁଲ୍‌ବୁଲ୍ ।। ସେ ସମସ୍ତ ମାୟା ବନ୍ଧନ ଠାରୁ ଊର୍ଦ୍ଧ୍ୱରେ ।

ମୀନା ।। ଏମିତିକା ଲୋକ ଲଜିଂ ହାଉସ ନ ଚଳେଇ ସେଇ ସୁଡ଼ଙ୍ଗ ଭିତରେ ରହିବା ଉଚିତ ।

ବିଶ୍ୱଜିତ୍ ।। ଏଇଠି ଗୋଟେ ସୁଡ଼ଙ୍ଗ କାହିଁକି ଅଛି ?

ବୁଲ୍‌ବୁଲ୍ ।। ଏଇଟା ଗୋଟାଏ ଅଭିଶପ୍ତ ରାଜବଂଶର ଉଆସ । ରାଜା ଓ ତାଙ୍କର ଦାୟାଦମାନେ ନଶାସକ୍ତ ହୋଇ ବ୍ୟଭିଚାର ଭିତରେ ଧ୍ୱଂସ ହୋଇଯାଇଛନ୍ତି ସେଇ ସୁଡ଼ଙ୍ଗର ଅନ୍ଧାର ତଳେ । ତା'ର ଭିତରେ ହଜିଯାଇଛି ଅନେକ ହୀରା ନୀଳା ଓ ତା' ଠାରୁ ମୂଲ୍ୟବାନ ଗୁଡ଼ାଏ ଜୀବନ ।

ମୀନା ।। ସେ ସୁଡ଼ଙ୍ଗଟା କେଉଁ ଯାଏଁ ଅଛି ?

ବୁଲ୍‌ବୁଲ୍ ।। କିଏ କହିବ ସେ କଥା ? ହୁଏତ ନିଜେ ମେଘନାଦ ସାମନ୍ତ ଜାଣିଥିବେ । ଆମେ ଶୁଣିଛୁ ସେ ସୁଡ଼ଙ୍ଗ କୁଆଡ଼େ ଭିତରେ ଭିତରେ ସମୁଦ୍ର ପର୍ଯ୍ୟନ୍ତ ଲମ୍ବି ଯାଇଛି । ତା' ପରେ ସମୁଦ୍ର ତଳେ କୁଆଡ଼େ ଯାଇଛି ସେଇଟା କିଏ କହିବ ? ସେଇଠି ଏ ପର୍ଯ୍ୟନ୍ତ କେହି ପହଞ୍ଚି ପାରିନାହାନ୍ତି ।

ମୀନା ।। ବର୍ତ୍ତମାନ ସେଇ ବାର୍ମି ଭିତରେ ପାଣି ଅଛି ?

ବିଶ୍ୱଜିତ୍ ।। କିଏ କହିବ ? ଆନନ୍ଦ ନଗରର ଏ ଅଞ୍ଚଳରେ ଅନେକ ସୁଡ଼ଙ୍ଗ ଅଛି । ଅନେକେ ତା' ଭିତରେ ମଧ୍ୟ ପଶନ୍ତି । ସେଇଠି ପ୍ରତ୍ୟହ ନରବଳି ଦିଆଯାଏ । ମଣିଷ ସେଇଠି ମଣିଷକୁ ହତ୍ୟା କରେ । ଲୋକେ କହନ୍ତି ସେଇ ସୁଡ଼ଙ୍ଗ ଭିତରେ ଖାଲି ନରମୁଣ୍ଡର ମାଳ ଝୁଲୁଛି । ଠିକ୍ ଆନନ୍ଦ କ'ଣ ଜାଣି ନପାରି ଲୋକେ ତା'ର ଭିତରେ ପଶିଯାଆନ୍ତି ।

ମୀନା ।। ଏ ବୋଉ ଲୋ' !! (ଭୟରେ ଶିହରି ଉଠିଲା)

ବୁଲ୍‌ବୁଲ୍ ।। ଦିଅନ୍ତୁ କପ ଦୁଇଟା । ତେଣେ ଅନେକ କାମ ଅଛି ।

[ବୁଲ୍‌ବୁଲ୍ କପ୍ ନେଇ ଚାଲିଗଲା]

ମୀନା ।। କ'ଣ ଦେଖୁଛ ?

ବିଶ୍ୱଜିତ୍ ।। ଭାବୁଛି ।

ମୀନା ।। କ'ଣ ଭାବୁଛ ?

ବିଶ୍ୱଜିତ୍ ।। ଭାବୁଛି ଆମେ କୋଉଠି ଆସି ପହଞ୍ଚିଗଲେ !

ମୀନା ।। ଗୋଟାଏ ରାଜପ୍ରାସାଦରେ ।

ବିଶ୍ୱଜିତ୍ ।। ରାଜପ୍ରାସାଦରେ ରାତିଟା କବିପଦରେ ରନ୍ଧ୍ର ହେବ ତ ?

ମୀନା ।। ଦେଖ, କ'ଣ ହଉଛି । ରାତିଟା ପାହୁ ।

ବିଶ୍ୱଜିତ୍ ।। ସକାଳୁ ସକାଳୁ ଆମେ ଏଠୁ ଚାଲିଯିବା । ମୁଁ ବିମଳେନ୍ଦୁର ଘରଟା ଖୋଜି ବାହାର କରିବି ।

[ ହଠାତ୍ କ୍ରମଶଃ ଅସ୍ପଷ୍ଟରୁ ସ୍ପଷ୍ଟ ହୋଇ ଆସୁଥିବା ଗୋଟିଏ ଗୀତର ଲହରୀ ଶୁଭିଲା ତା' ପରେ ଗୀତର ଶବ୍ଦ ଗୁଡ଼ିକ ଯା'ର ଅର୍ଥ ହେଲା କ୍ରମଶଃ ଆଲୋକ ଅଜାଡ଼ି ହୋଇ ଆସୁଥିବା ଦିଗନ୍ତରେ ଯେଉଁ ଅସ୍ପଷ୍ଟ କାକଳୀ ଶୁଭୁଛି ତାହା ଗୋଟିଏ ସକାଳ ପାଇଁ ଗୋଟିଏ ଉପକ୍ରମଣିକା ହୋଇପାରେ ହୁଏତ ତାହା ଏକ ଅବର ଗାଧୁଆ ସକାଳର ଶୁଭ ଖବର । ଗୀତଟି ପ୍ରଥମେ ନାରୀ, ପରେ ପୁରୁଷ ଓ ପରେ ବହୁ କଣ୍ଠରେ ଶୁଣାଯିବ]

ଆରେ, ଆରେ, ଆରେ···
ଅନ୍ଧରାତର ପକ୍ଷୀମାନେ,
ଭଙ୍ଗା ଡେଣାର ପକ୍ଷୀମାନେ,
ଡ଼ହକ ବିକଳ ପକ୍ଷୀମାନେ, !
ପାହିଲା, ପାହିଲା, ପାହିଲା, ରାତିର ଖବର ଶୁଣ,
ଏଇ ଅବର ଗାଧୁଆ ସକାଳ ଖବର ଶୁଣ,
ଯୋଜନ ଯୋଜନ ଆକାଶ ସେପାରେ
ଅଛି ଏକ ସୁନା ଦେଶ
ଆଖିରେ ଆଖିରେ ଲହରୀ ସେଇଠି
ପରଶେ ମଳୟ ହାସ
ଗଛରେ ଗଛରେ ବିକଶି ଉଠିଛି
ନୀଳ ମରକତ ଫଳ
ମେଘରେ ମେଘରେ ଜୋଛନା ଢ଼ାଳୁଛି
ନୂଆ ଜୀବନର ସ୍ୱର ।

[ଗୀତର ସ୍ୱର କ୍ରମଶଃ ଲିଭିଯିବ]

ମୀନା ।। ଏ ଗୀତ କିଏ ଗାଉଛି ?

ବିଶ୍ୱଜିତ୍ ।। ମତେ ଲାଗୁଛି ଏ ଗୀତ ଯେମିତି ମୁଁ ଗାଉଛି

ମୀନା ।। ଯେମିତି ମୁଁ ଗାଉଛି...

ବିଶ୍ୱଜିତ୍ ।। ଆଉ କିଏ ଗାଇପାରେ ?

ମୀନା ।। ଅନ୍ଧାରରେ ସକାଳ ଖୋଜୁଥିବା ଲୋକମାନେ...

ବିଶ୍ୱଜିତ୍ ।। ଉଡ଼ି ଉଡ଼ି ଡେଣାଭାଙ୍ଗି ଯାଇଥିବା ପକ୍ଷୀମାନେ...

ମୀନା ।। ଅନ୍ଧାରରେ ଛଟପଟ ହେଉଛନ୍ତି...

ବିଶ୍ୱଜିତ୍ ।। ଆମ ଭଳି ଅନ୍ଧାର ଭିତରେ ବାଟବଣା ।

ମୀନା ।। ଭୁଲ୍ ଆଉ ଠିକ୍‌ର ସରହଦ ଭାଙ୍ଗି ଯାଇଛି ।

ବିଶ୍ୱଜିତ୍ ।। କିଏ କହିବ ? ନିଶାରେ ଆମେ ହୁଏତ ଗୁଡ଼ାଏ କବିତା ପଢ଼ୁଛେ ।

ମୀନା ।। କବିତା ପଢ଼ିବା ମଧ୍ୟ ଗୋଟିଏ ନିଶା...ସ୍ତ୍ରବିନସ୍କି କବିତା ଲେଖୁଥିଲା ।

ବିଶ୍ୱଜିତ୍ ।। ପୁଣି ସେଇ ! ସ୍ତ୍ରବିନସ୍କି ତମ ପାଇଁ ଏକ ନିଶା ।

ମୀନା ।। ସ୍ତ୍ରବିନସ୍କି କଥା ପଢ଼ିଲେ ମତେ ସନ୍ଦେହ କରିବା ମଧ୍ୟ ତମର ଏକ ନିଶା ।

ବିଶ୍ୱଜିତ୍ ।। ବୁଲ୍‌ବୁଲ୍‌ର ବ୍ଲାକ୍-ଟି ଖାଇଲା ପରେ ମୋର ନିଶା ଛୁଟିଯାଉଛି ।

ମୀନା ।। ମୋର ମଧ୍ୟ, ତା'ହେଲେ...?

ବିଶ୍ୱଜିତ୍ ।। ତା' ହେଲେ ?

ମୀନା ।। ତା' ହେଲେ ଏ ଗୀତ କିଏ ଗାଉଛି ?

ବିଶ୍ୱଜିତ୍ ।। ଆଉ କୋଉଘରୁ ହୁଏତ କିଏ ଗାଉଥିବ ।

ମୀନା ।। ଏଇଟା କୋଉ ବାହାଘର ରେକର୍ଡ଼ ନୁହେଁ ତ ?

ବିଶ୍ୱଜିତ୍ ।। ନିର୍ଜନ ରାତିର ସମୁଦ୍ରକୁ ଦେଖି ହୁଏତ ତା' ମନରେ ଲହଡ଼ି ଉଠୁଥିବ !

ମୀନା ।। ଆକାଶରେ ଜହ୍ନ ନାହିଁ, ଆଜି ଅମାବାସ୍ୟା ।

ବିଶ୍ୱଜିତ୍ ।। ଝରକାଟା ଖୋଲିଦେବା ?

ମୀନା ।। ଏ ଘରେ ପରା ଝରକା ନାହିଁ ?

ବିଶ୍ୱଜିତ୍ ।। ଅଛି । କିନ୍ତୁ ଖୋଲା ହୁଏନି । କବରି ଘର ।

ମୀନା ।। ଯଦି କିଏ ସେଇବାଟେ ଘର ଭିତରକୁ ପଶିଯାଏ ?

ବିଶ୍ୱଜିତ୍ ।। ସମୁଦ୍ର ବଣିକ । ତମେ ଗହଣା ଗୁଡ଼ିକ ବାହାର କରି ବାକସ୍ ଭିତରେ ରଖି ଦେଉନା ?

ମୀନା ।। ଠିକ୍ !

[ମୀନା ତା'ର ଗଦାଏ ସୁନା ଗହଣା ବାହାର କଲା ଓ ବାକ୍ସ ଭିତରେ ରଖିବା ପାଇଁ ବାକ୍ସ ଖୋଲିଲା । ତା' ଭିତରେ, ସାବୁନ ତଉଲିଆ ବାହାର କଲା ।

ବିଶ୍ୱଜିତ୍ ଝରକା ଖୋଲିଦେଲା । ବାହାରେ ଟିକିଏ ଅନ୍ଧାର, ମନ୍ଥର ସଙ୍ଗୀତରେ ପରିବର୍ତ୍ତିନ ।

ମୀନା ତା'ର ଗହଣା ଗୁଡ଼ିକ ବାକ୍ସରେ ରଖିବାକୁ ଯିବା ସମୟରେ ଶୁଭିଲା ଘୋଷଣା :]

ଭିତର୍ ଲୋକ ।। Your attention please !
ଆନନ୍ଦ ଖୋଜିବାକୁ ଆସିଥିବା ଅତିଥି ବିଶ୍ୱଜିତ୍ ଓ ମୀନାକ୍ଷି !
Your attention please !
'ଆନନ୍ଦ ନଗର'ରେ କୌଣସି ଜିନିଷ ପ୍ରତି ଲୋଭ ବା ଆସକ୍ତି ରହି-ପାରିବ ନାହିଁ । ତମେ ଗହଣା ଗୁଡ଼ିକ ପୁନର୍ବାର ପିନ୍ଧି ପକାଅ । Yes, ଗହଣା ଗୁଡ଼ିକୁ ବାକସ୍‌ରେ ନ ରଖି କାନ, ବେକ, ଗଳା ଇତ୍ୟାଦି ଯଥା ସ୍ଥାନରେ ରଖ ।

ମୀନା ।। ଇଏ କ'ଣ ?

ବିଶ୍ୱଜିତ୍ ।। ମେଘନାଦ ସାମନ୍ତଙ୍କ ସ୍ୱର ।

ମୀନା ।। କାହିଁକି ? ଏଇଟା ଗୋଟାଏ କଏଦୀଖାନା ?

ବିଶ୍ୱଜିତ୍ ।। ଅଶ୍ଚର୍ଯ୍ୟ !

[ଭିକାରିଚରଣ ଖାଇବା ଜିନିଷ ନେଇ ଆସିଲା]

ଭିକାରି ।। ଫାଷ୍ଟକ୍ଲାସ୍ ତନ୍ଦୁରି, ଚିକେନ୍, ନାନ୍ କରିଦେଇଛୁ ପଞ୍ଜାବୀ, ବୁଢ଼ି ତା'ର ଏଇ ଟିଫିନ୍ କ୍ୟାରିଅରଟା ଦେଇଛୁ ଆପଣଙ୍କ ପାଇଁ । ଶୁଣି । ଏଇଥିରେ ଖାଇଦେଇ ରଖି ଦେଇଥିବେ, ମୁଁ ସକାଳୁ ଆସି ଫେରେଇ ନେବି ।

ବିଶ୍ୱଜିତ୍ ।। ତମେ ଖାସା ଘରେ ଆମକୁ ରଖେଇଲ, ବୁଝିଲ ?

ମୀନା ।। ଏଇଟା ଘର ନା କଏଦଖାନା ?

ଭିକାରି ।। କ'ଣ ହେଲା ଅବଧାନ୍ ?

ମୀନା ।। ତମ ମେଘନାଦ ସାମନ୍ତ କହୁଛନ୍ତି; ଗହଣା ଗୁଡ଼ାକ ବାକସ୍‌ରେ ରଖିଦିଅ ? ତା ଅର୍ଥ କ'ଣ ?

ବିଶ୍ୱଜିତ୍ ।। ଏଇଠି କ'ଣ ଡ୍ରିଂକ୍‌ସ ମନା ?

ଭିକାରି ।। ବାବୁଜୀ ଆପଣ ମାରୱାଡ଼ି ଧର୍ମଶାଳାକୁ ଯିବେ - ...ସେଇଠି ମାଛ ମାଂସ ମନା, ପିଆଜ ରସୁଣ ମନା...ସେମିତି ଧରନିଅନ୍ତୁ ! କ'ଣ କିଛି ଅସୁବିଧା ହେଲା ?

ବିଶ୍ୱଜିତ୍ ।। ନାହିଁ ଯେ...

ମୀନା ।। ତଥାପି ସିଏ କାହିଁକି ସେମିତି କହୁଦେନା !

ଭିକାରି ।। ଚଳେଇ ନେବେ ଆଗ୍ୟାଁ ! ଏଇଟା ଗରମ ଅଛି ଆଗ୍ୟାଁ ଖାଇଦେଇ ଶୋଇ-ନାହାଁନ୍ତି କାହିଁକି ? ମୁଁ ପୁଣି ସକାଳୁ ଆସିବି ? ଯାଉଛି ..

(ଭିକାରି ଚାଲିଗଲା)

ମୀନା ।। ଏଇଟା ମଧ୍ୟ ଗୋଟାଏ ଭୂତକୋଠି ।

ବିଶ୍ୱଜିତ୍ ।। ଭୂତକୋଠି ନ ହେଲେ ମଧ୍ୟ ରହସ୍ୟଜନକ ।

ମୀନା ।। ଏଇ ଘରେ କୋଉଠି ଗୋଟେ କ'ଣ ଅଛି ?

ବିଶ୍ୱଜିତ୍ ।। କାହିଁକି ?

ମୀନା ।। ମେଘନାଦ ସାମନ୍ତ ଆମକୁ ଦେଖୁଛି କୋଉବାଟେ ?

ବିଶ୍ୱଜିତ୍ ।। ଦେଖିଲ କାଲେ ଯଦି ଦର୍ପଣର ପ୍ରତିବିମ୍ବ ପଡ଼ୁଥିବ ..

ମୀନା ।। ଦର୍ପଣ କାହିଁ ?

ବିଶ୍ୱଜିତ୍ ।। ତା' ହେଲେ ? ସେ କେମିତି ଜାଣୁଛି ?

ମୀନା ।। ଲୋକଟା କ'ଣ ସତରେ ଆମକୁ ଜାଣିଛି ?

ବିଶ୍ୱଜିତ୍ ।। ତମକୁ ଜାଣିଥିବ !

ମୀନା ।। ମେଘନାଦ ସାମନ୍ତ ବୋଲି ମୁଁ କାହାକୁ ଜାଣେନା ।

ବିଶ୍ୱଜିତ୍ ।। ମୋର ବି ସେମିତି କେହି ବନ୍ଧୁ ନାହାଁନ୍ତି ।

ମୀନା ।। ତା' ହେଲେ ?...ମତେ ଏଇଟା ଗୋଟାଏ ଡିଟେକ୍‌ଟିଭ୍ ଉପନ୍ୟାସର ହୋଟେଲ୍ ଭଳିଆ ଲାଗୁଚି ।

ବିଶ୍ୱଜିତ୍ ।। ତମେ 'କୋହରା' ଫିଲ୍ମ ଦେଖିଛ ?

ମୀନା ।। ହଁ ।

ବିଶ୍ୱଜିତ୍ ।। 'ବିଶ୍ ସାଲ ବାଦ୍' ..

ମୀନା ।। ଆମେ ଠିକ୍ ସେମିତି ଗୋଟେ situation ରେ ପଡିଯାଇଛେ ।

ବିଶ୍ୱଜିତ୍ ।। ଏମିତି ବି ହୋଇପାରେ ! ପୂର୍ବଜନ୍ମରେ ଆମେ ଏଇ ରାଜପ୍ରାସାଦରେ ଯୁବରାଜ ଆଉ ଯୁବରାଣୀ ଥିଲେ । ତେଣୁ କିଏ ଜଣେ ପୁରୁଣା ଲୋକ ହୁଏତ ଆମକୁ ଜାଣିଛୁ ।

ମୀନା ।। ଜବ୍ବାଡ ଫାଣ୍ଟାଷ୍ଟିକ୍ !

ବିଶ୍ୱଜିତ୍ ।। କିମ୍ବା ଏଇଘରେ ଗୋଟିଏ Tape Recorder fit କରାଯାଇ ଥାଇପାରେ । କିମ୍ବା ଛୋଟ ଏକ Amplifier—ଯା' ଫଳରେ ଆମେ ସବୁ ହେଉଥିବା କଥାବାର୍ତ୍ତା ହୁଏତ ମେଘନାଦ ସାମନ୍ତ ପାଖରେ ଶୁଭୁଚି ।

ମୀନା ।। କେଜାଣି ! ମୋ ମୁଣ୍ଡ ଖରାପ ହୋଇଗଲାଣି ।

ବିଶ୍ୱଜିତ୍ ।। ଏଇଠି Privacy ବୋଲି କିଛି ନାହିଁ ।

ମୀନା ।। ଷ୍ଟେସନ ପ୍ଲାଟଫର୍ମରେ ରାତିଟା କଟେଇବା ଯା'ଠୁ ଭଲ ।

ବିଶ୍ୱଜିତ୍ ।। ଛାଡ଼ ମନ ଖରାପ କରି ଲାଭ ନାହିଁ । Bath Room ଯାଉଥିଲ ପରା— ଶୀଘ୍ର wash ହୋଇ ଆସ ।

(ମୀନା Bath Room କୁ ଗଲାବେଳେ ବୁଲ୍‌ବୁଲ୍ ଆସି ପ୍ରବେଶ କଲା ହଠାତ୍)

ବୁଲ୍‌ବୁଲ୍ ।। ଶୁଣନ୍ତୁ । ଟିକିଏ ଶୁଣନ୍ତୁ ।

ମୀନା ।। କ'ଣ ?

ବୁଲ୍‌ବୁଲ୍ ।। ଆପଣଙ୍କ ସୁଟକେଶରେ ଗୋଟିଏ ହାଲୁକା ବସନ୍ତ ରଙ୍ଗର ଶାଢ଼ି ଅଛି ।

ମୀନା ।। (ଅବାକ୍ ହୋଇ) ନା

ବୁଲ୍‌ବୁଲ୍ ।। (ନିର୍ଦ୍ଦେଶ ଦେଲା ଭଳି) ଅଛି । ଆଉ ଥରେ ଦେଖନ୍ତୁ । ମେଘନାଦ ସାମନ୍ତ କହୁଛନ୍ତି ବାଥ୍ ରୁମ୍‌ରୁ ଆସି ଆପଣ ସେଇ ବାସନ୍ତୀ ରଙ୍ଗର ଶାଢ଼ିଟା ପିନ୍ଧିବେ !

(ଏମିତି କହି ଫେରି ଯାଉଥିଲା, ପୁଣି ପଛକୁ ଫେରି) ଦେଖନ୍ତୁ । 'ଆନନ୍ଦ ନଗର'ରେ ଆପଣମାନେ କେହି ମିଛ କହିବାକୁ ଚେଷ୍ଟା କରିବେ ନାହିଁ । ଧରା ପଡ଼ିଯିବେ । ତା'ଛଡ଼ା ଆପଣମାନେ ଏଇଠି ଅତିଥି । ମେଘନାଦ ସାମନ୍ତଙ୍କର ଅତିଥି । ଆପଣମାନେ ଏଇଠି କି ଆନନ୍ଦ ଖୋଜି ଆସିଛନ୍ତି ଏବଂ

ଆପଣମାନଙ୍କୁ ତାହା ଉପରେ ମିଳିବ ମେନେଜରର ମେଘନାଦ ସାମନ୍ତ ସେଇ ବ୍ୟବସ୍ଥା କରୁଛନ୍ତି । ମିଛ କହିବା ଅର୍ଥ ଆପଣ ନିଜକୁ ନିଜେ ଠକୁଛନ୍ତି ।

[ ବୁଲ୍‌ବୁଲ୍‌ ଚାଲିଗଲା । ମୀନା ଆଉ Bath Room ଯାଇପାରିନି ନାହିଁ ]

ମୀନା ॥ ମୋର ଗୋଟେ ବାସନ୍ତୀ ରଙ୍ଗର ଶାଢ଼ି ଅଛି ବୋଲି ଏମାନେ କେମିତି ଜାଣିଲେ ?

ବିଶ୍ୱଜିତ୍‌ ॥ ମୁଁ'ତ ସେଇଆ ଭାବୁଚି ।

ମୀନା ॥ ଏଠି ରହିବା ବିପଦ ।

ବିଶ୍ୱଜିତ୍‌ ॥ କ'ଣ କରିବା ?

ମୀନା ॥ ଚାଲ, ଏଇଠୁ ପଳେଇବା ।

ବିଶ୍ୱଜିତ୍‌ ॥ କୁଆଡ଼େ ?

ମୀନା ॥ ଯେ କୌଣସି ସ୍ଥାନ ଏଠୁ ଶ୍ରେୟସ୍କର ।

ବିଶ୍ୱଜିତ୍‌ ॥ ଆଉ ଆନନ୍ଦ ?

ମୀନା ॥ ଆନନ୍ଦ ନ ମିଳିଲା ନାହିଁ । ଆନନ୍ଦ ମିଳିବା ବେଳକୁ ପ୍ରାଣ ଚାଲିଯାଇଥିବ ।

ବିଶ୍ୱଜିତ୍‌ ॥ ତମେ Beddingଟା ଗୁଡ଼େଇ ଦିଅ..

ମୀନା ॥ ଏ ଗୁଡ଼ାକ କଷ୍ଟ ହେଉ ପଛେ ବୋହି ନେଇ ଷ୍ଟେସନକୁ ଚାଲିଯିବା ।

ବିଶ୍ୱଜିତ୍‌ ॥ ଚାଲ, ବର୍ତ୍ତମାନ ।

(ବୁଲ୍‌ବୁଲ୍‌ ପ୍ରବେଶ କରି)

ବୁଲ୍‌ବୁଲ୍‌ ॥ ମେଘନାଦ ସାମନ୍ତ କହିଛନ୍ତି ଆପଣ କୁଆଡ଼େ ଯାଇପାରିବେ ନାହିଁ !

ବିଶ୍ୱଜିତ୍‌ ॥ (ଘାବରେଇ ଗଲେ) କୁଆଡ଼େ ମାନେ ?...ଆମେତ...ଏଇଠି...

ମୀନା ॥ ନା...ଆମେ ତ କୁଆଡ଼େ ଯାଉନୁ...ମାନେ...ଏଇଠି ରହିବା ପାଇଁ... ଏଇଠି କି...

ବୁଲ୍‌ବୁଲ୍‌ ॥ ମେଘନାଦ ସାମନ୍ତ କହିଛନ୍ତି ଥରେ 'ଆନନ୍ଦ ନିଳୟ'ର ଅତିଥି ହେଲାପରେ ଏଇଠୁ ଖସିପଳେଇଯିବା ଏକ ନୈତିକ ଅପରାଧ ।

ବିଶ୍ୱଜିତ୍‌ ॥ (ମୁହଁରେ ଗୋଟିଏ କୃତ୍ରିମ ହସ ଫିଙ୍ଗି) ନା । ଆଉ ଯିବୁ କୁଆଡ଼େ ?

ବୁଲ୍‌ବୁଲ୍‌ ॥ ଧନ୍ୟବାଦ । (ଚାଲିଗଲା)

ମୀନା ॥ (ପଛରୁ ବୁଲ୍‌ବୁଲ୍‌କୁ ଡାକି) ଶୁଣିଲ !

ବୁଲ୍‌ବୁଲ୍ ।। କ'ଣ ?

ମୀନା ।। ତମେ ଏଇ କବାଟ ପାଖରେ ରହି ଆମ କଥା ଶୁଣୁଥିଲ ?

ବୁଲ୍‌ବୁଲ୍ ।। (ଖାଲି ଆଖିରେ ବୁଝିଲ)

ମୀନା ।। ତମେ ଆମ ମନର କଥା ଶୁଣୁଥିଲ ?

ବୁଲ୍‌ବୁଲ୍ ।। ମୁଁ ଜଗୁଆଳ । ଜଗୁଆଳ ମାନେ ପ୍ରହରୀ । ଆପଣମାନଙ୍କ ମନରେ ଯେତେବେଳେ ଦ୍ୱନ୍ଦ୍ୱ ଆସେ ଓ ଆନନ୍ଦ ଖୋଜିବାର ବିରାଟ ଆଶା ଧରେଇ ପଡ଼େ ମୁଁ ସେତେବେଳେ ଆସେ । (ଚାଲିଗଲା)
(ପୁଣି ପଛରୁ ଫେରି) ଏବଂ ଏମିତି କହି ଚାଲିଯାଏ । (ଚାଲିଗଲା)

ମୀନା ।। (ଠାରରେ) କ'ଣ କହିଲା ?

ବିଶ୍ୱଜିତ୍ ।। (ଠାରରେ) କିଛି ବୁଝିହେଲାନି ।

ମୀନା । ବାଜେ ଲୋକଗୁଡ଼ାକ ।

ବିଶ୍ୱଜିତ୍ ।। (ଠାରରେ) ଅସ୍ତେ...ଆସ୍ତେ !

ମୀନା ।। କାହିଁକି ଆସ୍ତେ କହିବା ? ମୁଁ କାହାର ଖାଇଚି ନା ଚୋରି କରିଚି ?

ବିଶ୍ୱଜିତ୍ ।। (ତା' ମୁହଁରେ ହାତ ଦେଇ) ପ୍ଲିଜ୍ ! ସବୁ.... Be pragmatic Don't behave Like an Indian.

ମୀନା ।। ଓଃ ! କି ଯନ୍ତ୍ରଣା !

ବିଶ୍ୱଜିତ୍ ।। ଅନେକ ଯନ୍ତ୍ରଣା !

ମୀନା ।। ଅନେକ କିଛି କହିବା ପାଇଁ ଇଚ୍ଛା ହେଉଥିବ...ଅଥଚ କିଛି କହିହେବନି ।

ବିଶ୍ୱଜିତ୍ ।। ଏଇଟା ଏ ଶତାବ୍ଦୀର ଯନ୍ତ୍ରଣା ।

ମୀନା ।। ତମ ଭଳି କିଏ ସେ ଗୋଟାଏ ମୁହଁରେ ହାତ ଦେଇ ଚୁପ୍ କରାଇ ଦେଉଥିବ !

ବିଶ୍ୱଜିତ୍ ।। (କ୍ଳାନ୍ତ ହୋଇ) ସବୁ ମାଟି ହୋଇଗଲା ।

ମୀନା ।। ଅଥଚ ଅମେ କେତେ ସୁନ୍ଦର ପ୍ଲାନ୍ କରି ବାହାରିଥିଲେ !

ବିଶ୍ୱଜିତ୍ ।। ବହୁଦିନ ଧରି ଆନନ୍ଦ ମିଳିବାର ଏକ ନକ୍ସା ତିଆରି କରିଥିଲେ !

ମୀନା ।। ବାହାରିବା ପରେ କେତେ ପ୍ଲାନ୍.... ପୃଥିବୀରେ ଯେତେ ପ୍ରକାର ଆନନ୍ଦ ମିଳିପାରେ ତା'ର ବ୍ୟବସ୍ଥା, ଅଥଚ ସବୁ ଓଲଟିଗଲା ।

ବଣୁକଭ୍ର || ଜୀବନଟା ଦୁଏକ ସେମିତ । ଗୁଡ଼ାଏ ଆଣ୍ଟି କ୍ଲାଇମାକ୍ସ୍‌ର ମିଶ୍ରଣ ।

ମୀନା || ଅନିଶ୍ଚିତତା'ର ଅନ୍ୟ ନାମ ଜୀବନ !

ବଣୁକଭ୍ର || ସତେ କ'ଣ ଜୀବନରୁ ଆମେ କିଛି ପାଇବା ନାହିଁ ?

ମୀନା || କ'ଣ ପାଇବା ?

ବଣୁକଭ୍ର || ଆମେ ଯାହା ଖୋଜୁଥିଲେ !

ମୀନା || ତମେ ବେଳକୁ ବେଳ ହର୍ଙ୍ଗି ପଡ଼ୁଛ !

ବଣୁକଭ୍ର || ତମେ ଅଛ ବୋଲି ମୁଁ ହୃଦର ଏକ ଆନନ୍ଦ ବଳୟ ଭିତରେ ବୁଲୁଛି । ଯେତେ ଇର୍ଷା, ଯେତେ ଅଶାନ୍ତି । ଯେତେ ସନ୍ଦେହ, ସବୁରେ ତମ ପାଖରେ ଶୋଇଲାବେଳେ ଭୁଲି ଯାଉଛି । ତମ ମୁହଁକୁ ଚାହିଁଲେ ମୁଁ ସବୁ ଆନନ୍ଦ ପାଇଯାଏ । ମୋର ସବୁ ଖୋଜିବା ଶେଷ ହୋଇଯାଏ ! ତମ ଦେହଟା ହିଁ ମୋ' ପାଇଁ ସବୁ ଅର୍ଥ । ସବୁ ଆନନ୍ଦର ଉତ୍ସ !
ଚାଲ ମୀନା, ଆମେ ଏଇଠୁ ପଳେଇବା । ଏ ଆନନ୍ଦ ଆମର ଦରକାର ନାହିଁ ।

ମୀନା || ତମେ ଥିଲେ ମୋର ସବୁ ଆନନ୍ଦ । ତମରି କୋଳରେ ମୁହଁ ଗୁଞ୍ଜିଦେଲେ ମୁଁ ସବୁ ଭୁଲିଯାଏ । ଚାଲ, ଏଇଠୁ ଆମେ ପଳେଇବା—

ବଣୁକଭ୍ର || ଏଇଠୁ ଖସି ପଳେଇବାର ଉପାୟ ନାହିଁ ।

ମୀନା || ଖାସା ଜାଗାରେ ପହଞ୍ଚିଲେ ଆମେ...ଆମେ କାଲି ମଧ୍ୟ ଏଇଠୁ ଯାଇପାରିବା କି ନାହିଁ ?

ବଣୁକଭ୍ର || କେଜାଣି !! ବୋଧହୁଏ ଏଇଠୁ ଖସି ପଳେଇବାର ଆଉ ଉପାୟ ନାହିଁ !

। ହଠାତ୍ ସମୁଦ୍ର ଭିତରୁ ଦୁଇଟି ଜାଲୁଆଙ୍କ ମାଛକୁ ତଡ଼ିଲାଗି ବନଶୀ/ଜାଲରେ ଟାଣିଲା ଭଳି ଅଭିନୟ କରି ପ୍ରବେଶ କଲେ ଜଣେ ମଧ୍ୟ ବୟସ୍କ ଲୋକ । ଡାଙ୍ଗ୍ ପ୍ୟାଣ୍ଟ୍ । ପଲିଷ୍ଟର ଗେଞ୍ଜି । ମୁଣ୍ଡରେ କେଉଟି ଟୋପି । ମୁହଁରେ କଳା-ପାଚିଲା ଦାଢ଼ି । ମୁଣ୍ଡର ମଝି ଚନ୍ଦା । ଦୁଇପଟକୁ ଝୁଲୁଚି କିଛି କଳା-ପାଚିଲା ବାଳ : ହିପ୍‌ପୀଙ୍କ ଭଳି । ତାଙ୍କ ନାମ ଚନ୍ଦନ ପ୍ରହରାଜ ।

ଚନ୍ଦନ ।। ହାଃ-ହାଃ-ହାଃ-ହାଃ-ହାଃ......

(ବିଶ୍ୱଜିତ୍ ଓ ମୀନା ଚମକି ପଡ଼ିଲେ ଓ ପଛକୁ ବୁଲିଲେ)

ଆଉ ଖସିଯିବାର ଉପାୟ ନାହିଁ!

ବିଶ୍ୱଜିତ୍ } ।। କିଏ ?
ମୀନା

ଚନ୍ଦନ ।। ପଡ଼ିଛନ୍ତି । ଠିକ୍ ଜାଲରେ ପଡ଼ିଛନ୍ତି ।

ବିଶ୍ୱଜିତ୍ ।। ଆପଣ ?

ଚନ୍ଦନ ।। (ଜାଲରେ ପଡ଼ିଥିବା କାଳ୍ପନିକ ମାଛକୁ ଧରି) ମୁଁ...ହାଃ......ହାଃ... ..
Fisher King ଚନ୍ଦନ ପ୍ରଧ୍ୱଜ !

ବିଶ୍ୱଜିତ୍ ।। (ମୀନା ପଛରେ ଡ଼ରି ଠିଆ ହୋଇଥିଲା । ତାକୁ ପଛକୁ ଠେଲି, ଆଗେଇ ଆସି) ଏଇଠି କ'ଣ ଦରକାର ?

ଚନ୍ଦନ ।। ମାଛ .. ମାଛ ଶିକାର କରୁଛି ?

ମୀନା ।। ମାଛ...!! (ଚନ୍ଦନ ପ୍ରଧ୍ୱଜଙ୍କୁ ପାଗଳ ଭଳି ମନେ କରି ହସିଲା)

ଚନ୍ଦନ ।। ମାଛ...!! ମାଛ କ'ଣ ଜାଣିନା ? ତମ ବାହାଘର ବେଳେ ତମ ଦୁଆରରେ ମାଛ ଚିହ୍ନ ହୋଇଥିବ ! ମାଛ !!

ବିଶ୍ୱଜିତ୍ ।। ରାତି ଅଧରେ ଏଇ ଘର ଭିତରେ ଆପଣ ମାଛ ଧରିବାକୁ ଆସିଲେ ?

ଚନ୍ଦନ ।। ଏଇଟା ହିଁ ଶୁଭ ମୁହୂର୍ତ୍ତ । ତମପାଇଁ ସବୁ ମଙ୍ଗଳ ଖୋଜିବା ପାଇଁ ମୁଁ ଆସିଛି । ରାତି କ'ଣ ? ଦିନ କ'ଣ ? ଘର କ'ଣ ? ସମୁଦ୍ର କ'ଣ ?

ବିଶ୍ୱଜିତ୍ ।। (ମୀନାକୁ) ଘର କ'ଣ, ସମୁଦ୍ର କ'ଣ ?

ମୀନା ।। ଆପଣ କ'ଣ ଆମ ରୁମ୍‌ଟାକୁ ସମୁଦ୍ର ବୋଲି ଧରିନେଲେ ?

ବିଶ୍ୱଜିତ୍ ।। କି ଆଶ୍ଚର୍ଯ୍ୟ କଥା !

ଚନ୍ଦନ ।। ବିଷୁବ୍‌ରେଖ ସମୁଦ୍ରଠାରୁ ଆରମ୍ଭ କରି କଣ୍ଟଳ ଏଇ କୋଠରି ପର୍ଯ୍ୟନ୍ତ... ଦିନର ଆଲୁଅ ଓ ରାତିର ଅନ୍ଧାରକୁ ଏକାକାର କରି ମୁଁ ଶିକାର କରୁଛି । ମାଛ ଶିକାର ।

ବିଶ୍ୱଜିତ୍ ।। ଖୁବ୍ ଭଲକାମ କରୁଛନ୍ତି ।

ଚନ୍ଦନ ।। ନା ।

ବିଶ୍ୱଜିତ୍ ।। ଆଉ ତା' ହେଲେ ? ହଉ । ଖରାପ କାମ କରୁଛନ୍ତି ।

ଚନ୍ଦନ ।। ମାଛ ଶିକାର, Fisher king ଚନ୍ଦନ ପ୍ରଧାନଙ୍କ ପାଇଁ ଭଲ କ'ଣ, ଖରାପ କ'ଣ ?

ବିଶ୍ୱଜିତ୍ ।। ବାଃ ! ଆନନ୍ଦ ଜଳସ୍ରୋତ ଭିତରେ ରହି ମାଛ ଶିକାର ।

ମୀନା ।। ସେ ସୁଡ଼ଙ୍ଗ ଭିତରେ ମାଛଙ୍କ ଦ୍ଦଷ୍ଟ ହୁଅଥିବ !

ଚନ୍ଦନ ।। (ଖାବ୍ର ସ୍ୱରରେ ମୀନା ଓ ବିଶ୍ୱଜିତଙ୍କୁ ଦୃଷ୍ଟି) ଦେଖିବାକୁ ଖୁବ୍ ସୁନ୍ଦର । ଏମିତି ମାଛ ମୁଁ ଅନେକ ଦିନ ହେଲା ଦେଖିନି ।

ମୀନା ।। ହେ ! ଆମେ ଦି'ଜଣ ତାଙ୍କ ପାଇଁ ଦି'ଟା ମାଛ !

ଚନ୍ଦନ ।। କିନ୍ତୁ ତମେ ଦି'ଟା ଏ ପର୍ଯ୍ୟନ୍ତ ଗଭୀର ସମୁଦ୍ର ଦେଖିନାହଁ ।

ବିଶ୍ୱଜିତ ।। ଗଭୀର ସମୁଦ୍ର ?

ଚନ୍ଦନ ।। ହାଃ— ହାଃ !! ଗଭୀର ସମୁଦ୍ର !! ଯେ ମାଛ ଯେତେ ଗଭୀରର/ସେ ସେତିକି ଚତୁର ପାରିବାର ! (ହସିଲେ)

ବିଶ୍ୱଜିତ ।। ଆପଣଙ୍କ କଥା କିଛୁ ବୁଝି ହେଉନି ।

ମୀନା ।। ସେ କିନ୍ତୁ କ'ଣ ଚୋଟାଏ କହୁଛନ୍ତି ।

ବିଶ୍ୱଜିତ୍ ।। ବଡ଼ ବିଚିତ୍ର କଥାବାର୍ତ୍ତା :

ମୀନା ।। ଏଇଟି ସମସ୍ତେ ବିଚିତ୍ର !

ଚନ୍ଦନ ।। ତମେ ଦି'ଟା କିନ୍ତୁ ଖୁବ୍ ନରମ । ନରମ ନରମ ମାଛ, ଥରେ ଜାଲରେ ଧରା ପଡ଼ିଲେ ଆଉ ଖସି ଯାଇପାରେ ନାହିଁ । ଝୋଳରେ ରାନ୍ଧୁଥିବା ମାଛ ଖଣ୍ଡ ପରି ନରମ ।

ବିଶ୍ୱଜିତ ।। This is too much !

ମୀନା ।। ଆମେ ଆପଣଙ୍କ ପାଇଁ ମାଛ ଝୋଳ ! ଖାଇବେ ନା କ'ଣ ଆମକୁ ।

ଚନ୍ଦନ ।। ନା, ନା, ଖାଲି ତମେ ନୁହଁ । ଜୀବନରେ ଆନନ୍ଦ ଖୋଜିବାକୁ ଆସି ଏଇଠି ପହଞ୍ଚୁଥିବା ପ୍ରତ୍ୟେକ ବ୍ୟକ୍ତି ମତେ ମାଛ ଭଳି ଲାଗନ୍ତି । ଆନନ୍ଦର ସ୍ରୋତରେ ଭାସି ଭାସି, ପହଁରି ପହଁରି, ଅନୁକୂଳ ସ୍ରୋତରେ... ବିପଦ ନାହିଁ, ପରିଶ୍ରମ ନାହିଁ... ସ୍ରୋତରେ ଭାସି ଭାସି... ଆକାଶର ତାରା ଗଣି ଗଣି ଯାଉ ଯାଉ ହଠାତ୍ ଜାଲରେ ପଡ଼ିଯାଆନ୍ତି । ଆନନ୍ଦର ଜାଲ !! (ହସିଲେ) ନରମ ନରମ ମାଛ ! ଗଭୀର ଜଳ ଦେଖିନାହଁ ! ଖାଲି ପାଣି ଉପରେ ଜହ୍ନରାତିକୁ ଦେଖି ଚକ୍ ଚକ୍ କରୁଛ ।

ବିଶ୍ୱଜିତ୍ || (ମୀନାକୁ) ଭଦ୍ରଲୋକ ପାଗଳ ନୁହନ୍ତି !

ମୀନା || ମନେ ହେଉଛି ତାଙ୍କ କଥାରେ ଗୋଟେ କ'ଣ ଫିଲସଫି ଅଛି, ତାଙ୍କୁ ପଚାର ।

ବିଶ୍ୱଜିତ୍ || କ'ଣ ପଚାରିବି ?

ମୀନା || ଆପଣ ଆମରି ଭଳି ଏଇଠିକି ଆନନ୍ଦ ଖୋଜିବାକୁ ଆସିଥିଲେ ?

ଚନ୍ଦନ || ଆସିଥିଲି, ଆସୁଅଛି ଏବଂ ଆସୁଥିବି ମଧ୍ୟ ।

ମୀନା || ଆପଣ ଏଇଠି କେତେ ଦିନ ହେଲା ଅଛନ୍ତି ?

ଚନ୍ଦନ || ଅନେକ ବର୍ଷ ଧରି ।

ବିଶ୍ୱଜିତ୍ || କ'ଣ କହିଲେ ? ଗୋଟାଏ ଦିନ ପାଇଁ ଏଇଠିକି ଆସି ଆପଣ ଅନେକ ବର୍ଷ ହେଲା ଏଇଠି ମାଛ ଧରୁଛନ୍ତି !

ଚନ୍ଦନ || ହୋଇପାରେ । ହୁଏତ ନିଜ ଜାଲରେ ମୁଁ ନିଜେ ପଡ଼ିଯାଇଛି । ଅନେକ ଦିନ ତଳେ । ମୁଁ ସମୁଦ୍ର ଭିତରେ ଢେଉ ଉପରେ ନାଚ ନାଚ ଜୀବନ ଦେଖୁଥିଲି.. ତା'ପରେ ମୋର ମନେହେଲା ମୁଁ ଯେମିତ ଢେଉ ଭଳି ଭାସି ଭାସି ଗୋଟାଏ ସୀମାହୀନ ସୁଡ଼ଙ୍ଗ ଭିତରେ ପଶିଯାଇଛି । ପ୍ରତିଟି ତରଙ୍ଗରେ ମୁଁ ନିଜ ଉପରେ ନିଜେ ବାନ୍ଧେଇ ହେଉଛି । ମୋ' ଶବ୍ଦ ମୋ ପାଖକୁ ଫେରି ଆସୁଛି ପ୍ରତିଧ୍ୱନି ହୋଇ—ମୋଟାମୋଟି ଏ' ଏକ ଅପହଞ୍ଚ ଅବସ୍ଥା ।

ବିଶ୍ୱଜିତ୍ || ଆମର ମନେ ହେଉଚି ଏଇଟା ଗୋଟାଏ ବିପଦଜନକ ଯାଗା, ଏଇଠୁ କିମିତି ଖସି ଯାଇହେବ କହିପାରିବେ ।

ଚନ୍ଦନ || (ହସିଲେ) ମୁଁ ବି ଅନେକ ଚେଷ୍ଟା କରିଛି ।

ବିଶ୍ୱଜିତ୍ || କ'ଣ ? ଖସି ଯିବା ପାଇଁ ?

ଚନ୍ଦନ || କିନ୍ତୁ ଥରେ ଜାଲରେ ପଡ଼ିଲେ ଖସିଯିବା ସମ୍ଭବପର ନୁହେଁ ।

ବିଶ୍ୱଜିତ୍ || ଆମେ ଏଇଠୁ ଯାଇପାରିବୁ ନାହିଁ ?

ଚନ୍ଦନ || ଶୁଣିଥିଲି ତମେ ବୋଧେ ଆନନ୍ଦର ଏକ ଫର୍ମୁଲା ତିଆରି କରିଛ !

ବିଶ୍ୱଜିତ୍ || କୋଉ ଫର୍ମୁଲା ?

ଚନ୍ଦନ || ଯୋଉଟାକୁ ମେଘନାଦ ସାମନ୍ତ ଖୋଜୁଛନ୍ତି ।

ମୀନା || ମାନେ ?

ଚନ୍ଦନ || ଯୋଉ ଫର୍ମୁଲାରେ ପ୍ରତିବିମ୍ବ ମଧ୍ୟ ଚନ୍ଦ୍ରିକା ହୁଏ !

ମୀନା || ଆମ ପାଖରେ କୌଣସି ଫର୍ମୁଲା ନାହିଁ ।

ଚନ୍ଦନ || ମୋର ମନେ ହେଉଛି କଷ୍ଟସ୍ଥ ଅଛୁ । ତମେ ବୋ'ଟା କଷ୍ଟସ୍ଥ ଆନନ୍ଦ ଖୋଜୁଛ ଏବଂ ଆନନ୍ଦ ଖୋଜିବା ଅର୍ଥ ଆଗରୁ ସେଥିପାଇଁ ମାନସିକ ପ୍ରସ୍ତୁତ । ତା' ନହେଲେ ଏଠିକି ଆସିଥା'ନ୍ତ କାହିଁକି ?

ମୀନା || ଆମର ଭୁଲ୍ ହୋଇଯାଇଛି ।

ବିଶ୍ୱଜିତ୍ || ଏବଂ ଆସିବାର ଏଇ ଘଣ୍ଟାଏ ଭିତରେ ଆମେ ଅଣନିଶ୍ୱାସୀ ହୋଇଗଲୁଣି ।

ଚନ୍ଦନ || ମାଛମାନେ ପ୍ରଥମେ ପାଣି ଭିତରେ ବୁଡ଼ିଲା ମାତ୍ରେ ଠିକ୍ ଏମିତି ଅଣ-ନିଶ୍ୱାସୀ ହୋଇପଡ଼ନ୍ତି । ଆଜକାଲି ପାଣିରେ ବୁଡ଼ିରହି ବଞ୍ଚିବା ଶିଖୁଛନ୍ତି ।

ମୀନା || ଏଇଠି ପହଞ୍ଚିବା ବେଳଠୁ ମିନିଟିଏ ପାଇଁ ମଧ୍ୟ ଆମେ ଆରାମ କରିପାରିନୁ ।

ଚନ୍ଦନ || ସେମିତି ଅଣନିଶ୍ୱାସୀ ହୋଇ ପାଣି ଭିତରୁ ଅକ୍ସିଜେନ୍ ଆହରଣ କରିବା ଶିଖନ୍ତୁ ।

ବିଶ୍ୱଜିତ୍ || ନା, ଆମେ ଏଇଠୁ ଚାଲିଯିବାକୁ ଚାହୁଁ ।

ଚନ୍ଦନ || କୋଉଠିକି ଯିବ ?

ବିଶ୍ୱଜିତ୍ || ଆଉ ଗୋଟିଏ ଭଲ ଜାଗାକୁ । ଯୋଉଠି ବିପଦ ନଥିବ !

ଚନ୍ଦନ || ଆଉ ଏକ ଉପନିବେଶ ?

ମୀନା || ସତରେ, ଆମେ ଗୋଟାଏ ରାତି ବିଶ୍ରାମ କରିବାକୁ ଆସିଥିଲୁ, କିନ୍ତୁ—

ବିଶ୍ୱଜିତ୍ || କିନ୍ତୁ ଏଇଠି ଘଣ୍ଟାଏ ହେଲା ଭୟ ଓ ଆଶଙ୍କା ଭିତରେ ..... ।

ଚନ୍ଦନ || ସବୁ ମାଛ ଜାଲରେ ପଡ଼ିଲେ ଏମିତି ଛଟପଟ ହୁଅନ୍ତି !

ବିଶ୍ୱଜିତ || ଆପଣ ଏଇଠି ପହଞ୍ଚି ପ୍ରଥମେ ଏମିତି ଛଟପଟ ହେଉଥିଲେ ?

ଚନ୍ଦନ || ଜୀବନରେ ଏମିତି ଅନେକ ସମସ୍ୟା ଆସିବ ।

ମୀନା || ଏଇ ସମସ୍ୟାର କୌଣସି ମୂଲ୍ୟ ନାହିଁ ।

ଚନ୍ଦନ || କୌଣସି ସମସ୍ୟାର କୌଣସି ମୂଲ୍ୟ ନାହିଁ ଯେମିତି ମୋର ମାଛ ଧରିବା ଅନ୍ୟ କାହାପାଇଁ ଅବାନ୍ତର । ଅଥଚ ମୋ' ପାଇଁ ଗୋଟିଏ ସମସ୍ୟା । ଯେମିତି ପ୍ରକୃତ ଆନନ୍ଦ ଖୋଜି ବାହାର କରିବା ତମମାନଙ୍କ ପାଇଁ ଗୋଟିଏ ସମସ୍ୟା ।

ବିଶ୍ୱଜିତ୍ || ନା, ଆମର ଆନନ୍ଦ ଖୋଜିବା ଦରକାର ନାହିଁ । ଆମେ ଏଇଠୁ ପ୍ରାଣ ନେଇ ଖସି ପଳେଇଯିବାକୁ ଚାହୁଁ ।

ଚନ୍ଦନ ।। ସେଇଆ ତ କହୁଚ । ସମସ୍ତଙ୍କୁ ପ୍ରଥମେ ପ୍ରଥମେ ଡ଼ର ମାଡ଼େ । ସମସ୍ୟା ଗୁଡ଼ାକ ଭୂତ ଭଳି ଆସି ଡ଼ରାନ୍ତି—ଏବଂ ସମସ୍ତେ ଭାବନ୍ତି ଖସି ପଳେଇବେ । କିନ୍ତୁ ଯିବେ କୁଆଡ଼େ ? ଉପାୟ ନାହିଁ ।

ମୀନା ।। ପ୍ଲିଜ୍ ! ଆପଣ ଗୋଟାଏ କିଛି କୁହନ୍ତୁ ।

ଚନ୍ଦନ ।। ଯିବା କ'ଣ ନିହାତ ଦରକାର ?

ମୀନା ।। ନିହାତ ନ ହେଲେ ଘଡରେ ଆମେ ମୋଟରୁ ଶୋଇ ପାରିବୁନ ।

ଚନ୍ଦନ ।। ଶୋଇବା କ'ଣ ନିହାତ ଦରକାର ? ଗୋଟାଏ ଦେଶ ତ ଏ ଯାଏଁ ସୁଷୁପ୍ତିରେ ଘୁଂଘୁଡ଼ି ମାରୁଛି ।

ବିଶ୍ୱଜିତ୍ ।। ଅନେକ ବାଟ ଯାତ୍ରା କରି ଆମେ ଥକି ଯାଇଛୁ ।

ମୀନା ।। ଦେହସାରା କୋଇଲା ଗୁଣ୍ଡ । ନିଶ୍ୱାସ ଭିତରେ ମଇଳା ଧୂଆଁ । ଫୁସ୍‌ଫୁସ୍ ଭିତରେ ଗୁଡ଼ାଏ ଆବର୍ଜନା ।

ବିଶ୍ୱଜିତ୍ ।। ଭୟଙ୍କର ଶୀତ । ଅଥଚ କମ୍ବଳ ଭିତରେ ପଶିଯିବାର ଉପାୟ ନାହିଁ ।

ମୀନା ।। ଦୁଇଘଣ୍ଟା ହେଲା ମୁଣ୍ଡ ବିନ୍ଧୁଚି, ଅଥଚ ଔଷଧ ନାହିଁ ।

ଚନ୍ଦନ ।। ସବୁ ମୁଣ୍ଡ ବିନ୍ଧା ପାଇଁ କ'ଣ ଔଷଧ ମିଳେ ?

ମୀନା ।। କିନ୍ତୁ ଏଇଠି ଆମେ ଗୋଟାଏ ରାତି ବଞ୍ଚିବୁ କେମିତି ?

ବିଶ୍ୱଜିତ୍ ।। ବଞ୍ଚିବା ଦୂରର କଥା । ଆସିଲା ବେଳଠୁ ଆମର privacy ବିଧ୍ୱସ୍ତ ।

ଚନ୍ଦନ ।। ଓ ପ୍ରାଇଭେସି ! ତମେ ଏକା ଏକା ବଞ୍ଚିବାକୁ ଚାହଁ । You don't believe in community living ? ଅନ୍ୟ କାହାର ସୁଖ ଦୁଃଖ, ଆଶା ନିରାଶା ଭିତରେ ତମେ ଭାଗିଦାର ହୋଇ ବଞ୍ଚିବାକୁ ଚାହଁନା ? ମାଛ-ମାନଙ୍କ ଭଳି ଉପରେ ଉପରେ ଭାସି ସୂର୍ଯ୍ୟ କିରଣକୁ ଦେଖିବା ପାଇଁ ଭାରି ଇଚ୍ଛା ! ଅନ୍ୟ କାହାର ଛାଇ ପଡ଼ିଲେ ଡ଼ିଆଁ ମାରି ପାଣି ଭିତରେ ଅଦୃଶ୍ୟ ! ଛୋଟ ମାଛ ଦେଖିଲେ ଟକ୍ କରି ଗିଳି ପକାଇବ ! ଟିକିଏ ଶୀତ ପଡ଼ିଲେ ପେଟ ଓ ନଟେଇ ସନ୍ନିପାତ ରୋଗୀ ଭଳି ମୃତ ବେଶ୍ ମଜା ଲାଗୁଛି ତମ-ମାନଙ୍କୁ ଦେଖିଲେ !

ମୀନା ।। ଆମେ କିନ୍ତୁ ଅସହାୟ । ଆମର ଭାଗ୍ୟ ଏତେ ଖରାପ ଯେ ବୁଲି ବୁଲି ଆନନ୍ଦ ନଗରରେ ପହଞ୍ଚିଲୁ ପାଞ୍ଚ ଘଣ୍ଟା ଲେଟରେ । ଲକ୍ଷ୍ୟ ସ୍ଥଳରେ ପହଞ୍ଚିଲା ବେଳକୁ ବିଶ୍ରାମ କରିବା ପାଇଁ ସ୍ଥାନ ନାହିଁ । ଶେଷରେ ଯୋଉଠି ପହଞ୍ଚିଲୁ ସେଇଠି ଆମର ଆଶା ଗୁଡ଼ାକ ଆକସ୍ମିକ ଭାବେ ଓଲଟି ଗଲା ।

ଚନ୍ଦନ ।। ଜୀବନଟା କ'ଣ କମ୍ ଆକର୍ଷକ ? ତେବେ ସମସ୍ୟାର ମୁକାବିଲା କରିବା ପାଇଁ ତମର ସାହସ ନାହିଁ; ତେଣୁ ତମେ ଏମିତି ଭୂତ ଦେଖିଲା ଭଳି ଡ଼ରୁଚ । ତା'ପରେ ଦେଖିବ ହଠାତ୍ ଦିନେ ସକାଳୁ ଉଠିଲା ବେଳକୁ ଏ ଗୁଡ଼ାକ ସବୁ ଦେହସୁହା ହୋଇଯାଇଛି । ତା'ପରେ ଆଉ ବିପଦର ଆଶଙ୍କା ନାହିଁ ।

ମୀନା ।। ଆପଣ କ'ଣ କହୁଛନ୍ତି ଏଇଠି ଦେହସୁହା ହୋଇଗଲେ ଆଉ ବିପଦ ନାହିଁ ?

ଚନ୍ଦନ ।। ତମେ ଆନନ୍ଦ ପାଇବା ପାଇଁ ଯୋଉ ଫର୍ମୁଲାଟା କରିଛ ସେଇଟା କହିଦେଲେ ଆଉ ବିପଦ ନାହିଁ ।

ମୀନା ।। କୋଉ ଫର୍ମୁଲା କଥା କହୁଛନ୍ତି ସିଏ ?

ବିଶ୍ୱଜିତ୍ ।। କେଜାଣି ।

ମୀନା ।। ତମ ପାଖରେ ଅଛି ଯଦି ଦେଇ ଦେଉନା ?

ବିଶ୍ୱଜିତ୍ ।। ଥିଲେ ଦିଅନ୍ତିନି ?

ମୀନା ।। ତା'ହେଲେ ମାଗୁଚନ୍ତି କେମିତି ?

ବିଶ୍ୱଜିତ୍ ।। ମୁଁ ଜାଣିଚି ?

ମୀନା ।। ଦେଇଦିଅ । ଫର୍ମୁଲାଟା ଦେଇଦେଲେ ସେ ଆମକୁ ଏଇଠୁ ଖସି ପଳେଇବାର ବାଟ ବତେଇ ଦେବେ !

ବିଶ୍ୱଜିତ୍ ।। ଏଇଠୁ ଆଉ ଯାଇହେବନି ଦେଖୁଛି ।

ମୀନା ।। ତା'ହେଲେ କ'ଣ କରିବା ?

ବିଶ୍ୱଜିତ୍ ।। ସକାଳ ହେଲା ପର୍ଯ୍ୟନ୍ତ ଅପେକ୍ଷା କରିବା ।

ଚନ୍ଦନ ।। ତଥାପି ତମର କୌଣସି ସମାଧାନ ହୋଇପାରିବ ନାହିଁ । କାରଣ ତମେ ଜାଣିନା ଆନନ୍ଦ କ'ଣ ? ହୁଏତ ଆନନ୍ଦ କହିଲେ ତମେ ଦୁଇ ମୁହୂର୍ତ୍ତର ଯୌନ କାମନା ଚରିତାର୍ଥ କରିବା କଥା ଚିନ୍ତା କରୁଛ...କିଛି ଲକ୍ଷ ଟଙ୍କା ବଦଳରେ ମିଳୁଥିବା ସୁଖ କଥା ଚିନ୍ତା କରୁଚ । କ'ଣ ?

ବିଶ୍ୱଜିତ୍ ।। ସମସ୍ତେ ତ ସେଇଆକୁ ହିଁ ଆନନ୍ଦ ବୋଲି ମନେକରନ୍ତି ।

ଚନ୍ଦନ ।। ଯେ ମାଛ ଯେତେ ଗଭୀରର/ସେ ସିନା ଚଞ୍ଚଳେ ପାରିବାର ।

ବିଶ୍ୱଜିତ୍ ।। ଆପଣ କ'ଣ କହିବାକୁ ଚାହାନ୍ତି ?

ଚନ୍ଦନ  ।। ତମ ମନରେ ବି ଗର୍ବଥିବ ତମର ଏୟାର୍ କଣ୍ଡିସଣ୍ଡ୍ କୋଠା, ଗାଡ଼ି ଆଉ ଚକ୍‌ମକ ଫେଶନ୍ ପାଇଁ...ତମେ ଉପଭୋଗ କରିଥିବା ସୁନ୍ଦରୀ ନାରୀମାନଙ୍କ ପାଇଁ ।

ବଶ୍ୱଜିତ୍ ।। Naturally, ପୃଥିବୀରେ ସେଥିପାଇଁ ସଂଗ୍ରାମ ଚାଲିଛି । ଜୀବନ ସଂଗ୍ରାମ ।

ଚନ୍ଦନ  ।। ଚାଲିଥାଇ ପାରେ । ତା' ଅର୍ଥ ନୁହେଁ ସେ ଗୁଡ଼ାକ ଆନନ୍ଦ ।

ବିଶ୍ୱଜିତ ।। ଆପଣଙ୍କଠାରୁ ତତ୍ତ୍ୱ ଶୁଣିବା ପାଇଁ ମୁଁ ପ୍ରସ୍ତୁତ ନୁହେଁ ।

ଚନ୍ଦନ  ।। ଆଉ କିଛିଦିନ ପରେ ଶୁଣିବା ପାଇଁ ଆଗ୍ରହ ହେବ ।

ମୀନା  ।। ଏଇଠୁ ଖସିବା ବାଟଟେ । କହୁବେ କି ନାଇଁ କହିଲେ ?

ଚନ୍ଦନ.  ।। କୋଉଠୁ ? ତମେ ଏଇଠି 'ଆନନ୍ଦ' ନଗରରେ ପହଞ୍ଚିଯାଇ ପାରିଛ ସେଇଟା ତମର ପୂର୍ବଜନ୍ମର ସୁକୃତି ଫଳ । ଏଇଠି ବର୍ତ୍ତିମାନ ସୁଦ୍ଧା ତମମାନଙ୍କର ମୋହ ମୁକ୍ତ ହୋଇପାରିବା କଥା ! ଆଶ୍ଚର୍ଯ୍ୟ ! ଏ ପର୍ଯ୍ୟନ୍ତ ନିଶା ଛାଡ଼ିନାହିଁ । ମତେ ଦେଖ । ଟଙ୍କା, ରାଜନୈତିକ କ୍ଷମତା ସବୁଥାଇ ମୁଁ ନିଜ ଜାଲରେ ନିଜେ ପଡ଼ିଯାଇଛୁ ।

ମୀନା  ।। ଆପଣ...ଆଗରୁ...

ଚନ୍ଦନ  ।। ମନ୍ତ୍ରୀ ଥିଲି । ଗଭର୍ଣ୍ଣର ଥିଲି । ମୁଖ୍ୟମନ୍ତ୍ରୀ ଥିଲି । ବର୍ଷକୁ ଦଶହଜାର ଟଙ୍କା ଫୋପାଡ଼ି ଦୁଇ ଡଜନ ସାହିତ୍ୟିକଙ୍କୁ କିଙ୍କର ଭଳି ରଖିଥିଲି । ପେନେସନ୍ ଦେଇ କଳାକାରମାନଙ୍କୁ ପାଦ ଚାଟୁଥିବା କୁକୁର ଭଳି ରଖିଥିଲି । ଟଙ୍କା ପାଞ୍ଚ ହଜାର ଫୋପାଡ଼ି ଏ ଦେଶର କଲେଜ ପ୍ରେସିଡେଣ୍ଟମାନଙ୍କୁ କିଣିଥିଲି । ମୋର ନିଜର ଗୋଟେ ଖବର କାଗଜ ଥିଲା । ତେଣୁ ନିଜର ଜୟନ୍ତୀ ପାଳନ କରିବା ଅତି ସହଜ ଥିଲା ମୋ' ପାଇଁ ।

ବିଶ୍ୱଜିତ୍ ।। ତା'ପରେ...?

ଚନ୍ଦନ  ।। ତା'ପରେ କ'ଣ ହେଲା ମୁଁ ଜାଣିନି । କିନ୍ତୁ ଆନନ୍ଦ ମିଳିଲା ନାହିଁ । ଏ ପର୍ଯ୍ୟନ୍ତ ମୁଁ ରାଜନୀତିର ଜାଲ୍‌ରେ ବନ୍ଦ ହୋଇ ବୁଲୁଛି...
Fisher King Chandan Praharaj ହନେ ତମ ଦେଶର ରିଅଲ୍ କିଙ୍ଗ୍ ଥିଲେ ।

ମୀନା  ।। ଏ ବୋଉ ! ଆପଣଙ୍କୁ ଦେଖିଲେ କିନ୍ତୁ ଯେ କେହି ପାଗଳ ବୋଲି ଭାବିବ ! ଆପଣ ତା'ହେଲେ ସମ୍ଭ୍ରାନ୍ତ କେଶରୀ ମହାପାତ୍ରଙ୍କୁ ଜାଣିଥିବେ !

ଚନ୍ଦନ  ।। ଶିଳ୍ପପତି ? ତମେ କ'ଣ ତାଙ୍କ ଝିଅ ?

ମୀନା  ।। ହଁ ମଉସା ?

ବିଶ୍ୱଜିତ୍ ।। ଆପଣ ଜସ୍ୱନ୍ତ ପଟ୍ଟନାୟକଙ୍କୁ ନିଶ୍ଚୟ ଜାଣିଥିବେ ?

ଚନ୍ଦନ ।। ଜସ୍ୱନ୍ତ ପଟ୍ଟନାୟକ ? ସେଣ୍ଟ୍ରାଲ୍ ସେକ୍ରେଟେରିଏଟ୍‌ର ଡେପୁଟି ସେକ୍ରେଟେରି ।

ବିଶ୍ୱଜିତ୍ ।। ମୁଁ ତାଙ୍କର ପୁଅ ।

ଚନ୍ଦନ ।। ଜସ୍ୱନ୍ତ ମୋର ବ୍ୟକ୍ତିଗତ ବନ୍ଧୁ ଥିଲା । ତାକୁ ଗୋଟାଏ ଭିଜିଲାନ୍ସ କେଶରୁ ମୁଁ ରକ୍ଷା କରିଛି ।

ବିଶ୍ୱଜିତ୍ ।। ନମସ୍କାର ମଉସା !

ଚନ୍ଦନ ।। ମଉସା......!! ହାଃ-ହାଃ-ହାଃ-ହାଃ .....ହଠାତ୍ Fisher King Chandan Praharaj ତମ ଦୁଇଜଣଙ୍କର ମଉସା ହୋଇଗଲା ପରେ ତମକୁ କ'ଣ ଆନନ୍ଦ ମିଳିଲା ?

ବିଶ୍ୱଜିତ୍ ।।
ମୀନା ।। } ଆମେ ଏଇଠି ଆପଣଙ୍କୁ ଦେଖି ଅନେକ ଖୁସି ।

ମୀନା ।। ଆଜି ଘରର ଏଇ ଛଟପଟ ଅବସ୍ଥାରେ ଆପଣ ହିଁ ଏକମାତ୍ର ସାନ୍ତ୍ୱନା !

ଚନ୍ଦନ ।। (ରାଗିଗଲେ) No !! You are hypocrites !! ହଠାତ୍ ତମର ସାହାଯ୍ୟ ଦରକାର ବୋଲି ତମେ ଦୁ'ଜଣ ମତେ ସାଙ୍ଗେ ସାଙ୍ଗେ ମଉସା ବୋଲି ଡାକି ପକେଇଲ । ମୋର ମନେ ହେଉଛି ଦରକାର ସରିଗଲେ ସାଙ୍ଗେ ସାଙ୍ଗେ ତମେମାନେ ମତେ ପାଗଳାବୋଲି କହି ଏଇଠୁ ତଡ଼ିଦେବ । ତମର ସମ୍ପର୍କ ସବୁ ଦରକାରରୁ ଜାତ । ଏ ସମ୍ପର୍କ ମନର ସମ୍ପର୍କ ନୁହେଁ ।

ମୀନା ।। ମୁଁ ଜାଣିଶି ଆପଣଙ୍କୁ ଦେଖି ଦୁଃଖ ଦେଇଛୁ ମଉସା : ମତେ କ୍ଷମା କରନ୍ତୁ ।

ବିଶ୍ୱଜିତ୍ ।। Please ! I beg apology, ଆପଣ ରାଗନ୍ତୁ ନାହିଁ, ଏଇଠୁ କିପରି ଆମେ ଯାଇପାରିବୁ, ତା'ର ଉପାୟଟା ବତାଇ ଦିଅନ୍ତୁ ।

ଚନ୍ଦନ ।। ମୁଁ ଯାନବାହନର ଠିକଣା ରଖେ ନାହିଁ । ବରଂ ତମେ ସେଇ ଫଟିକ୍ ଦାସ ସଙ୍ଗେ ଆଲୋଚନା କର ।

ମୀନା ।। ସେ ପୁଣି କିଏ ?

ଚନ୍ଦନ ।। ଟ୍ରାନ୍ସପୋର୍ଟ କମ୍ପାନୀର ମ୍ୟାନେଜର । ପୃଥିବୀର ବହୁ ସୁନ୍ଦର ସ୍ଥାନର ମାନଚିତ୍ର ତାଙ୍କ ପାଖରେ । ତମେ ଚାହିଁଲେ ସେ ତମକୁ ପାସ୍‌ପୋର୍ଟ-ଭିସା ଇନ୍‌ବୁକ୍‌ସ ଆଣିଦେବ । ମୁଁ ତାଙ୍କୁ ଏଇଠିକି ପଠେଇ ଦେଉଛି ।

[ସେ ଚାଲିଗଲେ । ବିଶ୍ୱଜିତ୍ ଓ ମୀନା କ୍ଲାନ୍ତ ହୋଇ ବସି ପଡ଼ିଲେ]

ବିଶ୍ୱଜିତ୍ ।। କ'ଣ କରିବା ?

ମୀନା ।। ମୋ' ମୁଣ୍ଡ ବୁଲେଇ ହେଉଛି ।

ବିଶ୍ୱଜିତ୍ ।। କ୍ଲାନ୍ତ ! ଆମେ କାଲି ଏଇଠୁ ଯାଇପାରିବା ନାହିଁ ।

ମୀନା ।। ମୋର ଘରକଥା ସବୁ ମନେ ପଡ଼ିଯାଉଛି । ବୋଉ କଥା—

ବିଶ୍ୱଜିତ୍ ।। ତମେ ଗର୍ଭି ପଡ଼ୁଛ !

ମୀନା ।। ମୋ' ମୁଣ୍ଡ ବୁଲେଇ ହଉଛି । ଚାରିଆଡ଼େ ଅନ୍ଧାର ଦିଶୁଛି ।

ବିଶ୍ୱଜିତ୍ ।। ତମର ଗର୍ଭ ସଞ୍ଚାର ହେଲା ।

ମୀନା ।। What ?

ବିଶ୍ୱଜିତ୍ ।। ହୁଏତ ତମେ ମା' ହେବାକୁ ଯାଉଛ !

ମୀନା ।। I don't want to be a mother now ! ଜୀବନରେ ଅନେକ କଥା ଜାଣିବା ପାଇଁ ବାକି । ମୁଁ ଏତେ ଶୀଘ୍ର ମୋ' ଯୌବନକୁ ଡଳ-ଡଳାନ୍ତ କରିବାକୁ ଚାହେଁନା...ଓଃ ! ମୋର କ'ଣ ହେଇଯାଉଛି ।

ବିଶ୍ୱଜିତ୍ ।। ତମେ ବିଶ୍ରାମ କର । ମୁଁ ବାଥରୁମ୍‌କୁ ଆସେ । Yes, ତମେ ଶୋଇଯାଅ ।

[ମୀନାକୁ ଶୁଆଇ ଦେଇ ବିଶ୍ୱଜିତ Bath Roomକୁ ଯାଇଚି । କ୍ରମଶଃ ମଞ୍ଚ ଅନ୍ଧାର ହେଲା । ଏବଂ ଶୁଭିଲା ସେଇ ପୁରୁଣା ଗୀତର ପୁନରାବୃତ୍ତି—]

ଆରେ ଆରେ ଆରେ
ଅଂଧ ଗୁହାର ପକ୍ଷୀମାନେ
ଭଙ୍ଗା ଡେଣାର ପକ୍ଷୀମାନେ
ଡହକ ବଉଳ ପକ୍ଷୀମାନେ......
ଆମେ ଶୁଣୁଥିଲୁ ଛୁଟିଲା ମାଡ଼ରେ
ବରଷାର ସାଇଁ ସାଇଁ
କାନ୍ଥ ବୁଡ଼ିଗଲା ବତାସ ବହିଲା
ଅସମୟେ ଭୂମପାଇଁ

ଏଇଠି ଏମିତି ଲୁହର ନଦୀରେ କଅଁଳ ଡ଼େଙ୍ଗା ଭସାଇ
ମନ ଗନ୍ଧର୍ବର ଏକଲା ଗଛରେ କାନ୍ଦୁଛି ଝିଙ୍କ ଚଢ଼େଇ
ପଥ ଢାଙ୍କି, ପଥ କାନ୍ଦି...ମୋଡ଼ ଆମ ଗଲା କାନ୍ଦି ।

[ଗୀତର ସ୍ୱର କ୍ରମଶଃ ଅସ୍ପଷ୍ଟ ହୋଇଗଲା ଏବଂ ଆଲୋକ ମଞ୍ଚ ଉପରେ ଏକ ସ୍ୱପ୍ନର ପରିବେଶ ସୃଷ୍ଟି କଲା । ତା' ପରେ ଶୁଭିଲା ଗୋଟାଏ ହାତୁଡ଼ିରେ କେଉଁଠି ଏକ ଘଣ୍ଟା ବାଡ଼େଇବା ଶବ୍ଦ । ସେ ଶବ୍ଦ କ୍ରମଶଃ ତୀବ୍ର ହୋଇ ଉଠିଲା । ଏତେ ତୀବ୍ର ଯେ ଶୋଇଥିବା ମୀନାକ୍ଷି ଏକ ଭୟଙ୍କର ସ୍ୱପ୍ନ ଦେଖିଲା ଭଳି ଚିତ୍କାର କରି ଉଠିଲା ଏବଂ ଆଲୋକ ସ୍ଥିର ହେଲା ବେଳକୁ ଆଗରେ ଠିଆ ହୋଇଥିଲା ଧ୍ରୁବାନନ୍ଦ—ଏକ ଯୁବକ । ପରିଧାନ କଳା ପୋଷାକ]

ଧ୍ରୁବାନନ୍ଦ ।। ମୀନାକ୍ଷି !

ମୀନା ।। କିଏ !

ଧ୍ରୁବାନନ୍ଦ ।। ମୁଁ, ଧ୍ରୁବାନନ୍ଦ ।

ମୀନା ।। (ଚମକି ଉଠିଲା) ଧ୍ରୁବାନନ୍ଦ ? ଧ୍ରୁବାନନ୍ଦ କିଏ ମୁଁ ଜାଣେନା ।

ଧ୍ରୁବାନନ୍ଦ ।। ଠିକ୍ ଏମିତି ଶାଢ଼ି...ଏମିତି ମଥାରେ ଚକ୍ ଚକ କରୁଥିବା ମଥାମଣି ପିନ୍ଧି ସେଦିନ ତମେ ମୋ'ଠୁ ବିଦାୟ ନେଇଥିଲ ?

ମୀନା ।। କ'ଣ ତମେ କହୁଚ ? ତମେ କିଏ ?

ଧ୍ରୁବାନନ୍ଦ ।। (ପକେଟରୁ ! ବିଭିନ୍ନ ପକେଟରୁ ଶଙ୍ଖ ଶଙ୍ଖ ଚୁଡ଼ି, ଗଦା ଗଦା ଚୁଡ଼ି ବାହାର କଲା ଭଳି ଅଭିନୟ କରି) ଏଇ ଚୁଡ଼ି ଗୁଡ଼ାକୁ ଚିହ୍ନି ପାରୁଛ ?

ମୀନା ।। ଚୁଡ଼ି...ଇସ୍...ଏ ଗୁଡ଼ାକ ପ୍ରେମ ଚୁଡ଼ି.. ତମେ ଏ ପର୍ଯ୍ୟନ୍ତ—

ଧ୍ରୁବାନନ୍ଦ ।। ଏବଂ ଏ ପର୍ଯ୍ୟନ୍ତ ତମେ ମୋ' ପାଇଁ ହେଇ ପୁରୁଣା ମୀନାକ୍ଷି । ସେଇ ବାହାଘର ପୂର୍ବର !!

[ବାହାଘର ସାହାନାଇ ସ୍ୱର ଶୁଭିଲା ଏବଂ ଏକ ଚକ୍ ମକ୍ ପରିବେଶ ସୃଷ୍ଟି ହେଲା । ଧ୍ରୁବାନନ୍ଦ ମୀନାକ୍ଷିର ମୁଣ୍ଡରେ ଟାଣିଦେଲା ଓଢ଼ଣାଟିଏ ।

ମୀନାକ୍ଷି ଠିଆ ହେଇ ବାହାହେବା ଦିନର ବଧୂ ବେଶରେ । ସାମନାରେ ସୁବ୍ରହ୍ମଣ୍ୟ ।

ମୀନା ।। ଚଞ୍ଚଳ ହୋଇ (ଘୁଞ୍ଚିଛି) ସୁବ୍ରହ୍ମଣ୍ୟ !
(ପୁଣି ସେଇ ସ୍ମୃତିର ଗୀତ)

ଏଇଠି ଏମିତି ଲୁହର ନଦୀରେ କଅଁଳ ଡଙ୍ଗା ଭସାଇ
ମନ ଗହ୍ୱରର ଏକଲା ଗଛରେ କାନ୍ଦୁଚି ଝିଙ୍କ ଚଢ଼େଇ
ପଥ କାହିଁ......ପଥ କାହିଁ
ମାଡ଼ ଆମ......ଗନ୍ଧ କାହିଁ......

ସୁବ୍ରହ୍ମଣ୍ୟ ।। ମୁଁ ଖୁସି ହେଉଚି ତମେ ଫରେନ୍ ଫେରନ୍ତା ସ୍ୱାମୀ ପାଇଛ !

ମୀନା ।। (କାନ୍ଦୁଛି.....ଫୁଲି.....ଫୁଲି ...ପ୍ରଥମେ ନିଶବ୍ଦରେ ଏବଂ ପରେ ଜୋରରେ ଶୁଣାଯିବ)

ସୁବ୍ରହ୍ମଣ୍ୟ ।। (ଆହୁରି ପାଖକୁ ଯାଇ) ମୀନା !

ମୀନା ।। (ଆହୁରି ପାଖକୁ ଲାଗିଆସି ତା' ଛାତିରେ ମୁହଁ ରଖି). ମତେ ଭୁଲ୍ ବୁଝିବନି... ସୁନାଟା ମୋ'ର !

ସୁବ୍ରହ୍ମଣ୍ୟ ।। ଏ ସବୁ କ'ଣ ହୋଇଗଲା ମୀନା ?

ମୀନା ।। ସବୁ ଭାଗ୍ୟ !

ସୁବ୍ରହ୍ମଣ୍ୟ ।। କେବେ ଫେରିବ ?

ମୀନା ।। କେଜାଣି ।

ସୁବ୍ରହ୍ମଣ୍ୟ ।। କଲେଜ ଛୁଟି ହେଲେ ଅନେକ ଦିନ ତମେ ଏମିତି ଆସୁଥିଲ ! ଏବଂ ମୁଁ ନାଇଟ୍ duty କରି ଦିନ ସାରା ରେଡ଼ି ତମକୁ ଅପେକ୍ଷା କରୁଥିଲି । ଦିନେ ନ ଦେଖିଲେ ତମକୁ ମୁଁ ଶୋଇଲା ବେଳେ ସ୍ୱପ୍ନ ଦେଖୁଥିଲି । ଏଣିକି ଆଉ କାହାକୁ ନେଇ ସ୍ୱପ୍ନ ଦେଖିବି ?

ମୀନା ।। ସୁବ୍ରହ୍ମଣ୍ୟ ! ଆଉ ସେଗୁଡ଼ା କହି ଲାଭ କ'ଣ ?

ସୁବ୍ରହ୍ମଣ୍ୟ ।। କହି ଦେଉଛି ! ଏଇଟା ଶେଷ ଦେଖା ହେଲା ।

ମୀନା ।। (ପୁଣି କାନ୍ଦୁଛି)

ସୁବ୍ରହ୍ମଣ୍ୟ ।। ମୀନା !

ମୀନା ।। (ଛଳ ଛଳ ଆଖିରେ ଅନାଇଚି)

ସୁବ୍ରନସ୍ତୁ ॥ (ତା' ମୁହଁକୁ ଟେକ ଧରି) ତମେ ଯେଉଁଦିନ ଆସିବ ବୋଲି କହି ଆସୁନଥିଲ, ମୁଁ ପ୍ରତୀକ୍ଷାର ଯନ୍ତ୍ରଣାରେ ଖୁବ୍ ଛଟପଟ ହେଉଥିଲି । କେଉଁଠି ଟିକିଏ ଖସ୍‌ଖସ୍ ଶୁଭିଲେ ତମ ଗୋରା ଜଙ୍ଘ ଉପରେ ଘଷି ହେଉଥିବା ଶାଢ଼ିର ଶବ୍ଦ ଭାବି ମୁଁ ଶୋଇଥିବା ଖଟ ଉପରୁ ଉଠି ଯାଇ ଝରକାବାଟେ ତମ ଆସିବା ବାଟକୁ ଚାହୁଁଥିଲି ।

ମୀନା ॥ (ଦୀର୍ଘଶ୍ୱାସ । ଟିକିଏ ଘୁଞ୍ଚିଆସି) ହୁଁ । ତମେ ମତେ ଖୁବ୍ କଡ଼ା କଥା କହୁଥିଲ ଏବଂ ମୁଁ ଅଭିମାନ କରି ଜାଣିଶୁଣି ଦିନେ ଦିନେ ତମ ବସାକୁ ଯାଏନି !

ସୁବ୍ରନସ୍ତୁ ॥ ସେଦିନ କୌଣସି କାମରେ ମନ ଲାଗେନା । ଏମିତିକି ମାଗାଜିନ୍‌ଟେ ଓଲଟେଇଲେ ମଧ୍ୟ ସେଥିରେ ତମ ମୁହଁ ଦିଶେ ।

ମୀନା ॥ ତମେ ଯୋଉ ଛେନା ମାଗାଜିନ୍ ରଖୁଥିଲ ! ଖାଲି ସେଥିରେ ଲଙ୍ଗଳା ସ୍ତ୍ରୀଅଙ୍କ ଫଟୋ ।

ସୁବ୍ରନସ୍ତୁ ॥ ସେଇ ଫଟୋ ଭିତରେ ତମ ଦେହଟା ଦିଶେ ।

ମୀନା ॥ ମୁଁ ବି ଘରେ ପଢ଼ିପାରେନା । ସଂଧ୍ୟା ହେଲେ ଶୋଇଯାଏ । ବୋଉ ଗାଳି ଦିଏ । ବାପା ବିରକ୍ତ ହୁଅନ୍ତି । ମୋର ଖାଇବାପାଇଁ ଇଚ୍ଛା ହୁଏନା । ସେମିତି ଖୋଳରେ ଶୋଇଯାଏ ।

ସୁବ୍ରନସ୍ତୁ ॥ କବି ହୋଇଥିଲେ ତମକୁ ନେଇ କବିତା ଲେଖିଥାଆନ୍ତି । ତମେ ନଥିଲା ବେଳେ ତମକୁ ଅନେକ କଥା କହିବାପାଇଁ ଇଚ୍ଛା ହୁଏ ।

ମୀନା ॥ କୁହ । ବର୍ତ୍ତମାନ କହୁନା ?

ସୁବ୍ରନସ୍ତୁ ॥ ତମକୁ ଦେଖିଲେ ସବୁକଥା ଭୁଲିଯାଏ ।

ମୀନା ॥ ମିଛ କଥା । କହିବା ପାଇଁ ଇଚ୍ଛା ନାହିଁ ।

ସୁବ୍ରନସ୍ତୁ ॥ ତମ ରାଣ ।

ମୀନା ॥ ଥାଉ । ମୁଁ ତା'ହେଲେ ଯାଉଛି ।

ସୁବ୍ରନସ୍ତୁ ॥ ଯିବ ?

ମୀନା ॥ ବାପା ଖୋଜୁଥିଲେ । ହୁଏତ ମତେ ନେବାପାଇଁ ତାଙ୍କର ଗାଡ଼ି ଆସି ପହଞ୍ଚି ଯାଇଥିବ ।

ସୁବ୍ରନସ୍ତୁ ॥ ନୂଆ ସଂସାର ! ନୂଆ ଇଣ୍ଡଷ୍ଟ୍ରି ଆଲିଷ୍ଟ ସ୍ୱାମୀ—ଫରେନ୍ ଫେରନ୍ତା...ସୁବ୍ରନସ୍ତୁ ବୋଲି ତମ ଜୀବନରେ ଜଣେ କିଏ ଆସିଥିଲା—ଗୋଟାଏ ଖରାପ ସ୍ୱପ୍ନ ଭଳି ତାକୁ ଭୁଲିଯାଅ—

ମୀନା ।। ସୁବନସ୍ତୁ ! ମୁଁ କ'ଣ ସେତୁ ଭାବି ତମକୁ ଭଲ ପାଇଥିଲି ?

ସୁବନସ୍ତୁ ।। ପୁଣି କେବେ ଦେଖା ହେବ ?

ମୀନା ।। କିଏ ଜାଣେ ? ବାହା ହେଲାପରେ ତାଙ୍କର ଯେମିତି ଇଚ୍ଛା ।

ସୁବନସ୍ତୁ ।। ଶୁଣିଛି ଝିଅମାନେ କୁଆଡ଼େ ବାହାହେଲା ପରେ ସବୁକିଛି ଭୁଲିଯା'ନ୍ତି !

ମୀନା ।। ମୁଁ କିନ୍ତୁ ତମକୁ ଭୁଲି ପାରିବିନି !

ସୁବନସ୍ତୁ ।। ସତ କହୁଛ ?

ମୀନା ।। ଏତେ ଦିନ ଦେଖିଲା ପରେ ବି ମୋ' ଉପରେ ବିଶ୍ୱାସ ହେଉନି ?

ସୁବନସ୍ତୁ ।। ବିଶ୍ୱାସ ହେଉଛି ।

ମୀନା ।। ତା'ହେଲେ ?

ସୁବନସ୍ତୁ ।। ତମର ପିଲାକାଆସି ଆଡୁରି ଯାଉନି !

ମୀନା ।। ତମେ କ'ଣ କହିବାକୁ ଚାହୁଁଛ ? ମୁଁ କ'ଣ ଛୁଆ ?

ସୁବନସ୍ତୁ ।। ନା, ତମକୁ ବର୍ତ୍ତମାନ Full-fledged ନାରୀ କୁହାଯାଇ ପାରେ ।

ମୀନା ।। ଫାଜିଲ୍ !

ସୁବନସ୍ତୁ ।। କେବେ ଯଦି ବାଟରେ, ଘାଟରେ, ରେଲ୍‌ୱେ ଷ୍ଟେସନ୍‌ରେ କିମ୍ବା ମାର୍କେଟ୍‌ରେ ଦେଖାହୁଏ,ତମ ସ୍ୱାମୀଙ୍କୁ ନେଇ ମୁହଁମୋଡ଼ି ଚାଲିଯିବନି ତ ?

ମୀନା ।। ମୁଁ ସେମିତିକା ଝିଅ ନୁହେଁ ।

ସୁବନସ୍ତୁ ।। ଆମେ ଦିନେ ସ୍ୱପ୍ନ ଦେଖିଥିଲେ ଜୀବନସାରା ଆମେ ଆମର ହୋଇ ରହିବା ।

ମୀନା ।। ରହିବା ତ !

ସୁବନସ୍ତୁ ।। ଆଉ ମୁଁ ଯଦି ହଠାତ୍ ଆତ୍ମହତ୍ୟା କରେ ?

ମୀନା ।। (ସୁବନସ୍ତୁ ମୁହଁରେ ହାତଦେଇ) ଛି । (କିଛିକ୍ଷଣ ପରେ) ବାହାହେଲେ ମୋ' ଦେହଟା ଖାଲି ଯାଉଛି । ମନେ ରଖିବ, ମୁଁ ତମ ପାଖରେ ଚିରଦିନ ଅଛି ।

ସୁବନସ୍ତୁ ।। ତମେ କ'ଣ କଥା ଦେଉଛ ମୀନା, ଆମେ ଜନ୍ମ ଜନ୍ମାନ୍ତର ସାଥୀ ହୋଇ ରହିବା !

ମୀନା ।। ହଁ । ଆମେ ଜନ୍ମ ଜନ୍ମାନ୍ତର ସାଥୀ ହୋଇ

ସୁବନସ୍ତୁ ।। ମୀନା !

ମୀନା ।। ସୁବନସ୍ତୁ ! (ଛାତି ଭିତରେ ମୁହଁ ଗୁଞ୍ଜି ଦେଇଛି) ମୁଁ ଯାଉଛି ।

ସ୍ତବକସ୍ତ ।। ଯିବ ?

ମୀନା ।। ହଁ ।

ସ୍ତବକସ୍ତ ।। ଘୁରିବା ପାଇଁ ଇଚ୍ଛା ହେଉନ ।

ମୀନା ।। ମୋ'ର କ'ଣ ଯିବାପାଇଁ ଇଚ୍ଛା ହେଉଛ ?

ସ୍ତବକସ୍ତ ।। ତା'ହେଲେ ରହିଯାଅ !

ମୀନା ।। ସ୍ତବକସ୍ତ !

ସ୍ତବକସ୍ତ ।। ଚାଲ, ଆମେ କୁଆଡ଼େ...କୁଆଡେ ଲୁଚ ପଳେଇବା ।

ମୀନା ।। ମତେ ସେମିତ ଅନୁରୋଧ କରନ ସ୍ତବକସ୍ତ ! Please !

ସ୍ତବକସ୍ତ ।। ନା, ତମେ ଯାଅ । ମୁଁ ହସି ହସି ତମକୁ ବଦାୟ ଦେଉଛୁ । ଏଇ ଦେଖ ମୁଁ କେମିତ ହସୁଛୁ ।

[ସ୍ତବକସ୍ତର କଣ୍ଠ ଶେଷଆଡ଼କୁ ଭାଙ୍ଗି ପଡ଼ିଲ ଓ ସେ ଟଳ ଟଳି ଚାଲିଗଲ । ମୀନା ସେମିତ ଠିଆ ହେଇଥାଏ । ତା'ପରେ ହଠାତ୍ ଚିତ୍କାର କରି ଉଠିଲ "ସ୍ତବକସ୍ତ... ସ୍ତବକସ୍ତ"...ମଞ୍ଚ ଉପରେ'ସ୍ତବକସ୍ତ' ଶବ୍ଦଟା ପ୍ରତଧ୍ୱନ୍ତ ହେଲ ବେଳେ ମୀନା Somnambulist ଭଳି ସ୍ତବକସ୍ତ ପଛରେ ଚାଲିଗଲ । କ୍ରମଶଃ ପ୍ରତଧ୍ୱନ୍ତ ମିଳେଇ ଗଲ ଏକ ଭୟ ଯନ୍ତ୍ର ସଙ୍ଗୀତର ଅର୍କେଷ୍ଟ୍ରା ଭିତରେ । ମଞ୍ଚ ଅନ୍ଧାର ହେଲ । କ୍ରମଶଃ ଫିକା ହଳଦିଆ ଆଲୁଅ ଓ ତା'ପରେ ପୁଣି ସ୍ୱର୍ଣ୍ଣିର ନୀଳ ଆଲୋକ ଫେଣ୍ଡି ହେଇଗଲ ମଞ୍ଚ ଉପରେ । ଶୁଭିଲ କୋଉଠି ଏକ ଘଣ୍ଟା ବାଡ଼େଇବା ଶବ୍ଦ । ତା'ର ଭିତରେ ପ୍ରବେଶ କଲ ବିଶ୍ୱଜିତ୍ । ସେଇଠି ପହଞ୍ଚି ମୀନାକୁ ପାଇଲ ନାହିଁ । ତା' ମନରେ ଆଶଙ୍କା]

ବିଶ୍ୱଜିତ୍ ।। ମୀନା...! ମୀନା...!

[କ୍ରମଶଃ ଘଣ୍ଟା ବାଜିବାର ଶବ୍ଦ ତୀବ୍ରତର ହେଲା ଏବଂ ମଞ୍ଚ ଉପରକୁ ଆସିଲା ସ୍ୱବନସ୍ୱ]

କିଏ ?

ସ୍ୱବନସ୍ୱ ।। ଆପଣ ବିଶ୍ୱଜିତ୍ ମହାପାତ୍ର !

ବିଶ୍ୱଜିତ୍ ।। ଆପଣ... ?

ସ୍ୱବନସ୍ୱ ।। ମତେ ଚିହ୍ନିପାରୁ ନାହାନ୍ତି ?

ବିଶ୍ୱଜିତ୍ ।। ଆଗରୁ କେଉଁଠି...

ସ୍ୱବନସ୍ୱ ।। ମୁଁ ଆପଣଙ୍କର ଅତି ପରିଚିତ ।

ବିଶ୍ୱଜିତ୍ ।। କିଏ ଆପଣ ?

ସ୍ୱବନସ୍ୱ ।। ଭୂତ ।

ବିଶ୍ୱଜିତ୍ ।। Nonsense ! ନାଁ କ'ଣ ?

ସ୍ୱବନସ୍ୱ ।। ମୁଁ ଭୁଲି ଯାଇଛି (ଟିକିଏ ପରେ) ନୂଆ ଲୋକଙ୍କୁ ଦେଖିଲେ ଗୁଡ଼ାଏ ପ୍ରଶ୍ନ ପଚାରିବା ଆପଣଙ୍କର ଅଭ୍ୟାସ !

ବିଶ୍ୱଜିତ୍ ।। Hell with you !! (ପୁଣି ଖୋଜିବାକୁ ଲାଗିଲା) ମୀନା.. !!

ସ୍ୱବନସ୍ୱ ।। ମୋର ଗୋଟାଏ ପ୍ରଶ୍ନର ଉତ୍ତର ଦେଇ ପାରିବେ ?

ବିଶ୍ୱଜିତ୍ ।। କି ପ୍ରଶ୍ନ ?

ସ୍ୱବନସ୍ୱ ।। ମୁଁ ବଞ୍ଚିଛି ନା ମରିଛି ?

ବିଶ୍ୱଜିତ୍ ।। ଏଇତ ଆପଣ ବୁଲୁଛନ୍ତି, ବୁଲୁଛନ୍ତି ଆଉ ପ୍ରଳାପ କରୁଛନ୍ତି ।

ସ୍ୱବନସ୍ୱ ।। ସବୁ କଥାବାର୍ତ୍ତା କରୁଥିବା ମଣିଷ ଜୀବନ୍ତ ବୋଲି କୋଉ ବହିରେ ଲେଖା ହେଇଛି ?

ବିଶ୍ୱଜିତ୍ ।। ଦେଖନ୍ତୁ, ମୁଁ ବର୍ତ୍ତମାନ.. ମୋର ବର୍ତ୍ତମାନ ମାନସିକ ଅବସ୍ଥା ଖରାପ...... ସାହିତ୍ୟ ଆଉ ଦର୍ଶନ ଶୁଣିବା ପାଇଁ ମୋର ସମୟ ନାହିଁ... ...Excuse me...(ଚାଲିଯାଉଥିଲା)

ସ୍ୱବନସ୍ୱ । ଶୁଣନ୍ତୁ !

ବିଶ୍ୱଜିତ୍ ।। ଆଉ, କ'ଣ କହୁଛନ୍ତି ?

ସ୍ୱବନସ୍ୱ ।। ଆପଣ ମୀନାକ୍ଷିକୁ ଖୋଜୁଛନ୍ତି !

ବିଶ୍ୱଜିତ୍ ।। ହଁ ସେ ବର୍ତ୍ତମାନ କୋଉଠି ?

ଧ୍ରୁବାନନ୍ଦ ।। ଉପରେ ।

ବିଶ୍ୱଜିତ୍ ।। ମାନେ ?

ଧ୍ରୁବାନନ୍ଦ ।। ଆପଣ ତ ମୀନାକ୍ଷିଙ୍କୁ ମୋ' ପାଖରୁ ସବୁଦିନ ପାଇଁ ନେଇ ଯାଇଛନ୍ତି । ଏଇକ୍ଷଣି ଖୁଏତ ସେ ଅଳ୍ପ ସମୟ ପାଇଁ ଉପରକୁ ଯାଇଛି । ଏଥିପାଇଁ ଏତେ ବ୍ୟସ୍ତ ହେବାର କ'ଣ ଅଛି ?

ବିଶ୍ୱଜିତ୍ ।। ଆପଣ......

ଧ୍ରୁବାନନ୍ଦ ।। ଧ୍ରୁବାନନ୍ଦ ମହାନ୍ତି

ବିଶ୍ୱଜିତ୍ ।। ଓଃ ବ୍ରିଲିଆଣ୍ଟ !

ଧ୍ରୁବାନନ୍ଦ ।। ହ୍ୱିସ୍କି ପିଇବା ପାଇଁ ଆପଣଙ୍କର ଫଣ୍ଡ ଅଛି... ..ଗୁଆଡ଼େ ଯିବା ଆସିବା କରିବା ପାଇଁ ଆପଣଙ୍କର Air-Conditioned ଗାଡ଼ି ଅଛି । ଆପଣ ବଡ଼ ଲୋକ ..ସେଇଥି ପାଇଁ ମୀନାକ୍ଷିଙ୍କୁ ଛଡ଼େଇ ନେଇପାରିଲେ...

ବିଶ୍ୱଜିତ୍ ।। କିନ୍ତୁ...ଆଇ ଆମ୍ ସରି...ମୁଁ ଏସବୁ କିଛି ଜାଣିନି ।

ଧ୍ରୁବାନନ୍ଦ ।। ନର୍ମେ । ଇସ୍ପାତ ସହରର ଆକାଶରେ ସନ୍ଧ୍ୟା ଆସିଲେ... ସେଇ ଧୂଆଁ କଳା ଆକାଶ ଥରପରେ ଘୋର କୁଣ୍ଡଳୀ କୁହୁଡ଼ି ଉପରକୁ ଉଠେ...ମତେ ଲାଗେ ମୀନାକ୍ଷି ମୋ'ଠୁ ଅଲଗା ହୋଇଯାଉଛି ..ସ୍ମୃତି ସବୁ ଏକଲା ଗଛର ଶାଖା ଭଳି ବାଡ଼େଇ ହୋଇଯାଏ ମୋ ମନର ଛାତି ଉପରେ ।

ବିଶ୍ୱଜିତ ।। ଏଇଠି ହଠାତ୍...

ଧ୍ରୁବାନନ୍ଦ ।। ଶୁଣିଲି ଆପଣମାନେ ଏଇଠିକି ଆନନ୍ଦ ଖୋଜି ଆସିଛନ୍ତି । ଏବଂ ମୁଁ ଆସିଛି ନିଜ କଫିନ୍‌ରେ କଣ୍ଟା ବାଡ଼େଇ ବାଡ଼େଇ...ଭୟ ନାହିଁ । ମୁଁ ଆପଣଙ୍କର ଆନନ୍ଦକୁ କଫିନ୍ ଦେବାକୁ ଚାହେଁ ନାହିଁ । ଆସନ୍ତୁ...ମୁଁ ଖାଲି ଆପଣଙ୍କୁ କେତେଟା ଫଟୋ ଦେଖେଇବି ।

ବିଶ୍ୱଜିତ୍ ।। ଆପଣ କୋଉଠି ରହନ୍ତି ?

ଧ୍ରୁବାନନ୍ଦ ।। ଏଇ ପଡ଼ିଶା ଘରେ । ଆସନ୍ତୁ । ଆପଣଙ୍କର ନବବିବାହିତା ପତ୍ନୀଙ୍କର କେତେ ଖଣ୍ଡ ଫଟୋ ଆଉ ଚିଠି...ଆପଣଙ୍କୁ ଭେଟି ଦେବାକୁ ଚାହେଁ । I can't tolerate them any more......Better to get rid of them...

ବିଶ୍ୱଜିତ୍ ।। ମୀନାକ୍ଷି ...!

ସୁବ୍ରନସ୍ତୁ ॥ ସେ ତା'ର ଆନନ୍ଦ ଖୋଜୁଛି !

ବିଶ୍ୱଜିତ୍ ॥ ଆମେ ଏକାଠି ଆନନ୍ଦ ଖୋଜିବାର ପ୍ରୋଗ୍ରାମ୍ କରିଥିଲୁ ।

ସୁବ୍ରନସ୍ତୁ ॥ (ଖୁବ୍ ଜୋର୍‌ରେ ହସିଲା)

ବିଶ୍ୱଜିତ୍ ॥ (ଅପ୍ରସ୍ତୁତ ହୋଇ ଚୁପ୍ ରହିଲା)

ସୁବ୍ରନସ୍ତୁ ॥ ଆନନ୍ଦ କ'ଣ ଏକାଠି ଖୋଜାଯାଏ ? ନା ଏକା ଏକା ? ମୀନାକ୍ଷି ଠିକ୍ ବୁଝିଛି । ସେ ଚାଲିକି…ଆପଣ ହାରିଗଲେ । ଚାଲନ୍ତୁ ସେ ଠିକ୍ ଆପଣଙ୍କ ପାଖରେ ପହଞ୍ଚିବ । ଆରେ ଏମିତି ବୋକାଙ୍କ ପରି ଚୁପ୍ ରହିଲେ କ'ଣ ? ସେଇ ପୁରୁଣା ପଞ୍ଚତନ୍ତ୍ର କାହାଣୀ ସବୁ ଶୁଣିନାହାନ୍ତି ? ଗୁରୁକୁଳ ଆଶ୍ରମରୁ ଜ୍ଞାନ ପାଇଲା ପରେ ଶିଷ୍ୟମାନେ ସବୁ ବିଭିନ୍ନ ଦିଗକୁ ନିଜର ଜ୍ଞାନ ପରୀକ୍ଷା ପାଇଁ ଚାଲିଯାଆନ୍ତି । ତା'ପରେ ଅନେକ ସମୟ ପରେ ସେମାନେ ପୁଣି ଗୁରୁଙ୍କ ଆଶ୍ରମରେ ଏକାଠି ହୁଅନ୍ତି । ମୀନାକ୍ଷି ସେମିତି ଯାଇଛି । କଲମ୍ବସ୍ ଆମେରିକା ଆବିଷ୍କାର କଲଭଳି ସେ ଆନନ୍ଦକୁ ଆବିଷ୍କାର କରିବ ଆଉ ତା'ପରେ ଆପଣଙ୍କୁ କହିବ · ଆସନ୍ତୁ ।

[ଦୁହେଁ ଚାଲିଗଲେ । ମଞ୍ଚ କିଛି ସମୟ ପାଇଁ ଖାଲି ରହିଲା । ତା'ପରେ ଶୁଭିଲା ଫଟିକ୍ ଦାସଙ୍କ ସ୍ୱର ଏବଂ ସେ ପ୍ରବେଶ କଲେ । ତାଙ୍କ ପଛରେ ଚନ୍ଦନ ପ୍ରଧାନ]

ଫଟିକ୍ ॥ ଲକ୍‌ନୁଆ ଟୋର୍‌ରେ ଯାଆନ୍ତୁ .. ସନ୍‌ଟେଂପୁଲ କୋନାର୍କ୍……ନନ୍ଦନ କାନନ୍ । ଭୁବନେଶ୍ୱର ଲିଙ୍ଗରାଜ ଟେଂପୁଲ୍, ପିପିଲି, ଧଉଳେଶ୍ୱର, ଖଣ୍ଡାଗିରି, ବିନ୍ଦୁ ସରୋବର, ସିଦ୍ଧେଶ୍ୱର ଟେଂପୁଲ୍, ମୁକ୍ତେଶ୍ୱର ଟେଂପୁଲ୍…ଉଦୟଗିରି…ଖଣ୍ଡଗିରି.. ନନ୍ଦନକାନନ୍…

ଚନ୍ଦନ ॥ ଷ୍ଟୋପ୍ ! ଏମିତି ଶୂନ୍ୟରେ ଟ୍ରୋଚ କରି ବୁଲାଣି କହୁଚ…

ଫଟିକ୍ ॥ ଅଲବତ୍ ବୁଲିବ । ଅସୀମ ଟିକେଟ ବନ୍ଦୀ ନ କଲେ ଟ୍ରାନ୍‌ସପୋର୍ଟ କମ୍ପାନୀ ଚାଲିବ କେମିତି ?

ଚନ୍ଦନ ॥ ଟ୍ରାନସ୍‌ପୋର୍ଟ କଂପାନୀ ବନ୍ଦ, ସ୍ଥଳପଥ ବନ୍ଦ । ଏଣିକି ଯିଏ ଯିବାକୁ ଚାହିଁବ ଆକାଶପଥ ନହେଲେ ଜଳପଥ । This is Fisher King's order.

ଫଟିକ୍ ।। କ'ଣ ମନକୁ ମନ ! ଅଗ୍ରୀମ ଟିକେଟ ମୁଁ ବିକି ଆସୁଥିଲି ଏବଂ ବିକିବି ମଧ୍ୟ ।

ଚନ୍ଦନ ।। ହୁଁଃ ମୂର୍ଖ ! କେବେଠୁ ଚଷ ହେଲ ବ୍ୟବସାୟ କରୁଛ ?

ଫଟିକ୍ ।। ଅଠାଇଶି ବର୍ଷର କ୍ୟାନଭାସର୍ ଆଜ୍ଞା ମୁଁ । ଗୁରୁ ସନ୍ତୋଷ ଚକ୍ରବର୍ତ୍ତୀ ଆଜି ମର ସ୍ୱର୍ଗରେ ଅଛି । ସେଥିକାଳବେଳକୁ ଏଇଠି କେନ୍ଦ୍ର transport business କରୁନଥିଲେ ବାବୁଜୀ । ଆଖି ଖୋଲି ଦେଖଚ ଦାଦା, ବର୍ଷ ଭ ବାର ମାସରେ ଟ୍ରେଣ୍ଟା ପିକନ......ଗୋଟାଏ ଗୋଟାଏ ପିକନିକ୍‌ର ପ୍ରକାର ପ୍ରକାର ଲୋକ...ସମସ୍ତେ ଟ୍ରିହାନ୍ତି ଖାଲି ନନ୍ଦନକାନନ ଯିବେ । ଜହ୍ନୋ ତାକୁ ନନ୍ଦକାନନରେ ପହଞ୍ଚିବା କ'ଣ ସାଧାରଣ କଥା ? ସେମିତ ହିଁ ଗ୍ୟରେ ଥିଲେ ଯିବ । ଭଲେମ ଯାଉନା ?

ଚନ୍ଦନ ।। (ଅହମ୍ମକ ରକମର ଗମ୍ଭୀର ଥିଲେ) ସ୍ଥଳ ପଥରେ ମୁଁ ଅନେକ ବୁଲିଛି । ମୁଁ ମୋ ପାଇଁ ତମକୁ ଡ଼ାକି ଆଣିନ । ଏଇଠି ଏଇ 'ଆନନ୍ଦ ଜଳସ୍ୱରେ' ଦୁଇଜଣ ଆନନ୍ଦ ଖୋଜିବାକୁ ଆସିଛନ୍ତି । କିନ୍ତୁ ଯୋଉପ୍ରକାର ଆନନ୍ଦ ସିଏ ଖୋଜୁଛନ୍ତି ତାହା ଏଠେ ନାହିଁ । ସେମାନେ ବୁଝୁଁଛନ୍ତି ଅନ୍ୟ ଜାଗାଠିକ ବୁଲିଯିବେ !

ଫଟିକ୍ ।। ପିପିଲି, ଧବଳେଶ୍ୱର, କେଦାରଗୌରୀ ! ବନ୍ଦୁ ସରୋବର, ସିଦ୍ଧେଶ୍ୱର ଟେଂପୁଲ, ମୁକ୍ତେଶ୍ୱର ଟେଂପୁଲ୍, ଉଦୟଗିରି, ଖଣ୍ଡଗିରି, ନନ୍ଦନକାନନ !

ଚନ୍ଦନ ।। ଯେକୌଣସି ଜାଗା । ସେମାନେ ଖୁବ୍ ଶୀଘ୍ର ନନ୍ଦନକାନନରେ ପହଞ୍ଚି ଯିବାକୁ ଚାହାନ୍ତି ।

ଫଟିକ୍ ।। କାହାନ୍ତି ସେମାନେ ?

ଚନ୍ଦନ ।। ଖୋଜୁଛନ୍ତି...ଲେନ୍‌ସ ଲଗେଇ ଖୋଜୁଛନ୍ତି ଆନନ୍ଦ କୋଉଠି ଅଛି । ଗୋଟେ ଚନ୍ଦନ ପ୍ରଭୃତିଙ୍କ ସ୍ଥଳପଥରୁ ଆକାଶକୁ ଉଡ଼ିଯାଇ ଆନନ୍ଦ ପାଇବ ନାହିଁ ବୋଲି ଏଇନା ଜଳପଥରେ fishing କରୁଛି..... ହାଃ ... ହାଃ ...ହାଃ......

ଫଟିକ୍ ।। କିଛି ପରୱାଏ ନାହିଁ ମହାରାଜ ! ତାଙ୍କୁ ଜହ୍ନିଦଅନ୍ତୁ । ଆମ ଟ୍ରାନ୍‌ସପୋର୍ଟ କମ୍ପାନୀ ତାଙ୍କୁ ନେଇ ଠିକ୍ ଆନନ୍ଦଆ ଯାଗାରେ ପହଞ୍ଚେଇଦେବ । ନନ୍ଦନ-କାନନ ! (ପୁଣି ବଡ଼ ପାଟିରେ କ୍ୟାନ୍‌ଭାସ୍ କଲା) ଅଗ୍ରୀମ ଟିକେଟ ବୁକିଙ୍ଗ୍ ଚାଲିଛି...ନିଜ ନିଜର ଆସନ ସଂରକ୍ଷିତ କରି ରଖନ୍ତୁ । ସୁପର ଡ଼ିଲକ୍ସ୍ ବସ୍... ସନ୍‌ଗ୍ଲାସ୍ ଓ୍ୱିଣ୍ଡୋ... with all comforts... ଟ୍ରେନରୁ ଢିନଢୁ ବଳ ବୁଲିଆସିବେ...ଜାଣିପାରିବେ ନାହିଁ କିପରି ସମୟ କଟିଲା.... Luxury

Coach...ସ୍ୱପ୍ନ ସାଗ ଫୁଲ ଆଉ ଗୀତ......ମନ ଫୁଲେଣିଆ ଗୀତ... Tape Recorder ଆଉ ରଙ୍ଗୀନ୍ TV ..... Luxury Coach ପାଇଁ ନଅଲୁ ଅଗ୍ରୀମ ଟିକଟ୍ .....

ଚନ୍ଦନ ।। ହ୍ୱେପ୍ ! ଅଗ୍ରୀମ ଟିକଟ ବିକୁଛ ! ସେପଟାକେ ସାମନ୍ତ କହୁଛନ୍ତି ଅଗ୍ରୀମ ଟିକଟ ବିକ୍ରୀ ପାଇଁ ?

ଫଟିକ୍ ।। ଲକ୍‌ଜୁରି କୋଚ୍ ବୋଲି ଜାଣିଲେ ସମସ୍ତେ ଝୁଲି ଆସୁଛନ୍ତି ।

ଚନ୍ଦନ ।। ଶୁଣିଲ ତମେ କୁଆଡ଼େ ନମ Tourist Busର ଝରକାରେ ନାଲି, ନେଳି, କଳା ରଙ୍ଗର କାଚ ଲଗେଇଚ !

ଫଟିକ୍ ।। Sun-glass window !

ଚନ୍ଦନ ।। ପୃଥିବୀକୁ ରଙ୍ଗୀନ୍ ଚଷମା ଦେଇ ଦେଖିବାକୁ ପଡ଼ୁଥିବ ! ଆଉ ସେମାନେ ଦେଖିବେ କ’ଣ ? ମୁଁ ବା କ’ଣ ଦେଖିଲି ? ଧନ, ମାନ, ଗୌରବ, ସବୁ ଗୋଟାଏ ଗୋଟାଏ ରଙ୍ଗୀନ୍ କାଚ । ସେଇ ରଙ୍ଗୀନ ଚଷମା ଦେଇ ମୁଁ ଯୋଉ ଆନନ୍ଦ ଦେଖିଥିଲି ସେ ସୁନ୍ଦର ସବୁ ମିଛ । (ସେ ଦୀର୍ଘଶ୍ୱାସ ନେଲେ) O.K. ଫଟିକ୍ ବାସ । ତମେ ଏଇଠି ବସ । ସେମାନେ ଆସିବେ ।

ଫଟିକ୍ ।। କେତେବେଳେ ଆସିବେ ? ନ ଆସି ବ ପାରନ୍ତି ।

ଚନ୍ଦନ ।। ଆସିବେ । ନିଶ୍ଚୟ ଆସିବେ । ନ ହେଲେ ମୁଁ ତାଙ୍କୁ ପଠେଇଦେବି ।

(ଚାଲିଗଲେ)

ଫଟିକ୍ ।। ଏଇ ବର୍ଷ ବହୁତ ଯାତ୍ରୀ ଆନନ୍ଦ ଖୋଜୁଛନ୍ତି ! କଏ ପାଉଛି କଏ ନ ପାଉଛି ତା’ର ଠିକଣା ନାହିଁ । ମୋ’ କାମ ହେଲା ତାଙ୍କୁ ସେଇଠି ପହଞ୍ଚେଇ ଦେବା । ତା’ପରେ ତାଙ୍କ କାମ ।

[ଏତିକିବେଳେ ଉପକୂ ଓହ୍ଲାଇ ଆସିଲେ ବିଶ୍ୱଜିତ୍ ଓ ମୀନା]

ଅଗ୍ରୀମ ଟିକେଟ......ଅଗ୍ରୀମ ଟିକେଟ୍ ...ଯୋଉମାନେ ଚନ୍ଦନ ଜାନଠ ଯିବାକୁ ଚାହାଁନ୍ତି...ମତେ ଖୋଜୁଥିଲେ ଆଜ୍ଞା ?

ବିଶ୍ୱଜିତ୍ ।। ତମେ ସେଇ ଟ୍ରାନ୍‌ସ୍‌ପୋର୍ଟ କମ୍ପାନୀ !

ଫଟିକ ।। ହଜୁର୍ !

ମୀନା ।। ତମର ବସ୍ ସହୁତ ଗାଇଡ୍ ଯିବ ?

ଫଟିକ୍ ।। ଆମର ତ ଗାଇଡ୍ ଅଲଗା ଯାଏନ ବାବୁ ! ହେଲ୍ପ୍‌ଫର୍-ଦମ୍-ଗାଇଡ୍ ।

ବିଶ୍ୱଜିତ୍ ।। ଆମର ତ ଜଣେ ଭଲ ଗାଇଡ୍ ଦରକାର । କାରଣ ଏଇଠି ଆମେ ଦେଖୁଛୁ ଆନନ୍ଦ ନଗରରେ ଗାଇଡ୍ ବିନା କୁଆଡ଼େ ଯିବା ଅସମ୍ଭବ । ଏମିତି କି ଏଇ ଘର ଭିତରେ ସିଏ ହଜିଗଲେ ।

ମୀନା ।। ଆମେ ପୁଣି ୟୁରୋପ ବୁଲିଆସିଲୁ, ଆମେରିକା ବୁଲି ଆସିଲୁ—ସେଇଠି ଗାଇଡ୍ ଦରକାର ପଡ଼ିନି ନାହିଁ । କିନ୍ତୁ ଦେଖ କି ଅଦ୍ଭୁତ ଜାଗା ଏଇଟା ! ଏଇଠି ମୁଁ ବିନା ଗାଇଡ୍‌ରେ ଉପରକୁ ଚାଲିଗଲି ଯେ ଆଉ ଫେରି ପାରିଲିନି । ଶେଷରେ—

ବିଶ୍ୱଜିତ୍ ।। ମୁଁ ବ କ'ଣ ତମକୁ ସହଜରେ ଧରିପାରିଲି ? ଅନେକ ଖୋଜିଲି । ଉପରେ ଠିକ୍ ତମଭଳି ଦଶ ବାର ଜଣ ଝିଅଙ୍କୁ ଦେଖିଲି । ତମେ ବିଶ୍ୱାସ କରିବନି ମୀନା......ଠିକ୍ ତମ ଭଳି । ଏତେ ପାଖରୁ ଦେଖିଲି ଅଥଚ ଚିହ୍ନି ପାରିଲିନି ।

ମୀନା ।। ମୁଁ ତ ସ୍ୱପ୍ନରେ ବୁଲିଯାଉଥିଲି । 'ଆନନ୍ଦ ନଗର'ରେ ପହଞ୍ଚିଲା ବେଳଠୁ 'ମୋ' ଉପରେ ମୋର ଆଉ control ରହୁନି । ଇନ୍ଦ୍ରିୟମାନେ ବେଗବତୀ ନଦୀ ଭଳି ଏଣେତେଣେ ବୋହି ଯାଉଛନ୍ତି, ଗୋଟାଏ କେମିତି ଆଚ୍ଛନ୍ନ ଅଚ୍ଛନ୍ନଭାବ ।

ବିଶ୍ୱଜିତ୍ ।। ମୁଁ ତମକୁ ଉପରେ ଦେଖିଲାବେଳରୁ ମନେହେଲା ତମର ଯେମିତି ହୋସ୍ ନାହିଁ ।

ଫଟିକ୍ ।। ହୋସ୍ ରହିବନି ଆଜ୍ଞା ! ଆନନ୍ଦ ନଗରୀରେ ଅନେକ ହୋସ୍ ଏମିତି ହଜି ଯାଉଛନ୍ତି । ଆଜି ସେମାନଙ୍କର ଦେବୀ ମିଳନ । ଆଜି ଦେବୀମାନେ ନିଜ ନିଜ ନାଥଙ୍କୁ ପୁଣି ପାଇଛନ୍ତି, ସେମାନେ ଆମ ଲକ୍‌ଜୁରୀ କୋଚ୍‌ରେ ବସି ଯାଇଛନ୍ତି ପିପିଲି, କୋନାର୍କ, ନନ୍ଦନକାନନ...ଭୁବନେଶ୍ୱର, ମୁକ୍ତେଶ୍ୱର, ସିଦ୍ଧେଶ୍ୱର...କେଦାରଗୌରୀ, ଖଣ୍ଡଗିରି, ଉଦୟଗିରି...।

ବିଶ୍ୱଜିତ୍ ।। ତମ ଗାଡ଼ି କେତେବେଳେ ବାହାରୁଛି ?

ଫଟିକ୍ ।। ସନ୍ଧ୍ୟାରୁ ଠିକ୍ ସାଢ଼େ ଛ'ରେ ସାଗରିକା ପାଖରୁ Luxury Coach... ଆଉ ଗୋଏଙ୍କା ପାଖରୁ Deluxe...କୋଉଥିରେ ଯିବେ ବାବୁ ?

ମୀନା ।। ସେ ଯାହା ହେଉ ପଛେ ଆମେ Luxury Coach ରେ ନିଶ୍ଚୟ ଏଠୁ ବାହାରିବା ।

ବିଶ୍ୱଜିତ୍ ।। ତମର ଏଇଠୁ ଚାଲିଯିବା ପାଇଁ ସତରେ ଇଚ୍ଛା ହେଉଛି ?

ମୀନା ।। ତମର ଇଚ୍ଛା ହଉନି କି ? କ'ଣ ସବୁ ବ୍ୟସ୍ତ ହୋଇପଡ଼ୁଥିଲ ଏଇଠୁ ବୁଲିଯିବା ପାଇଁ !!

ବିଶ୍ୱଜିତ୍ ।। ସେ କଥା ଅଲଗା । ସୁବିଧାସବୁ ଦେଖିଲା ପରେ କାଳେ ଯଦି ତମର ଇଚ୍ଛା ହୋଇଥିବ ଏଇଠି ରହିଯିବା ପାଇଁ...

ମୀନା ।। ଏ ମା' !! ତମେ ସନ୍ଦେହ କରୁଛ !

ବିଶ୍ୱଜିତ୍ ।। ଛାଡ଼ । ହଁ, କୁହନ୍ତୁ ଆଜ୍ଞା ..ଆମେ ସୁବିଧାରେ ସେଇଠି ପହଞ୍ଚିବୁ ତ !

ଫଟିକ୍ ।। Luxury Coach ମାନେ ତ ସୁବିଧା । ସୁବିଧା ଛଡ଼ା ଆଉ କିଛି ନୁହେଁ ।

ତାପ୍ ଆପଣମାନଙ୍କ ପାଇଁ ଆମେ Transport Company ଖୋଲିଛୁ । ଆମ ଗାଡ଼ି ଧଡ଼ଡ଼ା ନୁହେଁ ମାଲିକ । ଆଉ ଟିକିଏ ଚେଷ୍ଟା କରିଥିଲେ ମୁଁ ମଧ୍ୟ ଗୋଟେ 'ଆନନ୍ଦ ନିଳୟ' ଖୋଲିଥାନ୍ତି । ଆମ ଆନନ୍ଦ ଏଇ ମେଘନାଦ ସାମନ୍ତଙ୍କର ଆନନ୍ଦଠାରୁ ଅଲଗା......ଆପଣ ଯାହା ଚାହିଁବେ ସେଥି ମିଳିଥାନ୍ତା । ପୁଣି Luxury Lodging House ...କ'ଣ କରିବି ? ମୁଁ ବାପାଙ୍କର ଅଯୋଗ୍ୟ ପୁଅ ! ବାପା ବି ତାଙ୍କ ବାପାଙ୍କର ଅଯୋଗ୍ୟ ପୁଅ ଥିଲେ । ଏଇଠି ଗୋଟେ ମନ୍ଦିର ଥିଲା । ବାପାଙ୍କୁ ପାଞ୍ଚ ଏକର ଜମି ଯାଚୁଥିଲେ । ବାପା ମନା କରିଦେଲେ । କହିଲେ-ପାଞ୍ଚ ଏକର ବାଲି ଉପରେ କି ଘର ହେବ ? ସବୁ ଭୁଷୁଡ଼ି ପଡ଼ିବ । ଆଜିକାଲି ବାଲିଗୁଡ଼ା ଇନ୍ଦ୍ରଭୁବନ ହୋଇଗଲାଣି । ଆଗେ ଏଇଠି କିଛି ନଥିଲା ବାବୁଜୀ ! ଗୋଟେ ଅଜବ ଟୀ' ଦୋକାନ ଥିଲା ଯେ ଖଣ୍ଡେ ଲୁଣିଆ ବିସ୍କିଟ ମଧ୍ୟ ମିଳୁ ନଥିଲା । ଆଜିକାଲି କେତେ କେତେ ରେନାପୋଡ଼ ତିଆରି ହଉଛି । ଆପଣଙ୍କୁ ଦି' ଖଣ୍ଡ ଟିକେଟ୍ ଦେବିକି ହଜୁର୍ ?

ବିଶ୍ୱଜିତ୍ ।। ଜଲ୍‌ଦି ଦିଅ ।

ମୀନା ।। ଆମେ ଏଇଠୁ ଶାନ୍ତିଯାନ ଯିବାକୁ ଚାହୁଁଛୁ ।

ଫଟିକ୍ ।। ଶାନ୍ତିଯାନ ଯିବେ ? ଏଇ ଅଧରାତିରେ ?

ମୀନା ।। ହଁ । ଏଇଠି ଆଉ ମୁହୂର୍ତ୍ତେ ମଧ୍ୟ ରହିହେବନି ।

ଫଟିକ୍ ।। କିନ୍ତୁ ରାତି ଅଧରେ କେମିତି ଯିବା ? ସକାଳ ନହେଲେ ତ ଯାଇ ହବନି ମା' !

ମୀନା ।। ଓଃ ! ସକାଳ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ପଡ଼ିବ ?

ଫଟିକ୍ ।। ଅଧରାତିରେ ଆମେ ଯାତ୍ରୀ ନେଇ କୁଆଡ଼େ ଯାଉନୁ ବାବୁଜୀ । Luxury Coach ର ଲାଇଟ୍ ରାତିରେ ଜଳେ ନାହିଁ ।

ବିଶ୍ୱଜିତ୍ ॥ ତା'ହେଲେ ?

ମୀନା ॥ ଟଙ୍କଟ କିଣି ନାହିଁ !

ବିଶ୍ୱଜିତ୍ ॥ ଦେଖ ଫଟିକ୍ ଦାସ...ଚାଲ ଆମେ ଅନ୍ଧାରରେ ଭିନ୍ନ Luxury Coach ରେ ଚାଲିଯିବାକୁ ଚାହୁଁ ।

ମୀନା ॥ ଅନ୍ଧାର ମତେ ଭଲ ଲାଗେ ।

ଫଟିକ୍ ॥ ଆମେ କିନ୍ତୁ ସେ Risk ନେଇପାରିବୁନି ବାବୁଜୀ । Excuse me...ଦେଖେ...ମୁଁ ଯଦି ଆଉ ଅନ୍ୟ ଯାତ୍ରୀ ପାଇବି..... Excuse me...Good Night ବାବୁଜୀ...ମୁଁ ସବାକୁ ସାଗରିକା ପାଖରେ ଡାଇ ନେଇ ଅପେକ୍ଷା କରିଥିବି ଆ..ପଣଙ୍କ ପାଇଁ ବୁଝିଛି Seat reserve ରହିଲା । ଭାବି ନାହାନ୍ତୁ Luxury Coach ଟା ଆପଣଙ୍କର ! ଯେତେବେଳେ ଚାହିଁବେ Seat...କିନ୍ତୁ ଗାଡ଼ି ସକାଳୁ ଛାଡ଼ିବ ! Okay, Good Night ବାବୁଜୀ !

ବିଶ୍ୱଜିତ୍ ॥ Good Night !

(ଫଟିକ ଚାଲିଗଲା । ବିଶ୍ୱଜିତ୍ ଗମ୍ଭୀର ହୋଇଗଲେ)

ମୁଁ ସକାଳୁ ଚାଲିଯିବି ?

ମୀନା ॥ କାହିଁକି ?

ବିଶ୍ୱଜିତ୍ ॥ ବିମଳେନ୍ଦୁ ଘରକୁ ଯିବି ।

ମୀନା ॥ ମୁଁ Luxury Coachରେ ଯିବି । ତମେ ତାଙ୍କୁ ସକାଳୁ ଯିବା ପାଇଁ ମନା କଲ କାହିଁକି ?

ବିଶ୍ୱଜିତ ॥ ମୋ' ଇଚ୍ଛା ।

ମୀନା ॥ ତମେ କହୁଥିଲ ଶେଷ ନିଶ୍ୱାସ ଥିବା ପର୍ଯ୍ୟନ୍ତ ଆମେ ଏକାଠି ଆନନ୍ଦ ଖୋଜିବା ।

ବିଶ୍ୱଜିତ ॥ ମତେ ଛାଡ଼ି ତା'ହେଲେ ତମେ ସୁବନସ୍ଥ ସାଙ୍ଗରେ ଉପରକୁ ଚାଲିଯାଇଥିଲ କାହିଁକି ?

ମୀନା ॥ Just ମୁଁ : ଜାଣିବାକୁ ଚାହୁଁଥିଲି ଏଇ ନବୀନ ଧରକାଙ୍କର କୋଠାଘର ଉପ୍ୱରେ କ'ଣ ଅଛି?

ବିଶ୍ୱଜିତ୍ ॥ କ'ଣ ଦେଖିଲ ?

ମୀନା ॥ ଆଉ ଗୁଡ଼ିଏ ନକୁଳ ଘର ! କେଉଁ ଅଡ଼କୁ ହେଲେ ବାଟନାହିଁ । ବାଟ ଭୁଲି ଯିବାର ଅନେକ chance. In fact, ମୁଁ ବାଟ ଭୁଲିଯାଇଥିଲି ।

ବିଶ୍ୱଜିତ୍ ॥ ତମେ ସ୍ୱାର୍ଥପର, ବାଟ ଭୁଲି ନଥାନ୍ତ ଆଉ କ'ଣ କରିଥାନ୍ତ !

ମୀନା ॥ ଏ ମା'— ତମକୁ ନେଇ ଚଳିବା ମୁସ୍କିଲ । କଥା କଥାକେ ତମର ସନ୍ଦେହ, ସେ ସୁବନସ୍ତ ତମକୁ କାବୁ କରିଦେଇଛି । କ'ଣ କହୁଛି ଯିଏ ମୋ' ନାଁରେ ?

ବିଶ୍ୱଜିତ୍ ॥ କିଛି ନାହିଁ !

ମୀନା ॥ ତମେ କାହିଁକି ତା' ସାଙ୍ଗରେ ଅଟଘଡ଼ିରେ ବୁଲୁଥିଲ ? ଜାଣିଚ ? ସୁବନସ୍ତଟା ଗୁଣ୍ଡା . କହାଉ ବାଜେ ଲୋକଟାଏ ! ମତେ ବହିପତ୍ର/ମାଗାଜିନ୍ ପଢ଼ିବାକୁ ଦେଇ ଦିନେ ମୋ' ଉପରେ ଅତ୍ୟାଚାର କରିବାକୁ ବସିଥିଲା । ସୁବନସ୍ତର ଜାତଗୋତ୍ର କିଛି ନାହିଁ । ସେ ପିଲଦିନୁ ଆମଘରେ ବଡ଼ ହୋଇଛି । ଏଇ କିଛି ଦିନ ତଳେ ବୋଉ ତାକୁ ଘରୁ ବାହାର କରିଦେଲି ବୋଲି ମୋ' ଚରିତ୍ର ବିରୁଦ୍ଧରେ ପ୍ରଚାର କରୁଛି । ମୁଁ ତ ଡ଼ରି ଯାଇଥିଲି । ତମ ମୁଣ୍ଡ ଉପରେ ଯିଏ କଣ୍ଟା ଚାଡ଼େଇ ଦେଇଛି—ସେଇଟା ତମର good luck !!

ବିଶ୍ୱଜିତ୍ ॥ ଆଉ ତମର ସେ ଚିଠି ଆଉ ଫଟୋଗୁଡ଼ାକ କ'ଣ ମିଛ ?

ମୀନା ॥ ତମେ ସେଗୁଡ଼ା ସତ ବୋଲି ବିଶ୍ୱାସ କରୁଛନ୍ତି ? ହଉ, ତା'ହେଲେ ତମେ ଯାଅ—ମୁଁ ଏଇଠି ରହିବି ।

ବିଶ୍ୱଜିତ୍ ॥ ଏଠି ରହିବ ?

ମୀନା ॥ ମଲେ ମରିବ ପଛେ ଏଇଠି ରହିବ । ଯିଏ ମୋର ସତ୍ତାକୁ ସନ୍ଦେହ କରୁଛି, ତାକୁ ନେଇ ମୁଁ ଆନନ୍ଦ ଖୋଜିବ ନା କେନ୍ଦ୍ର ! ସେ ଆନନ୍ଦ ନ ମିଳିବ ନାହିଁ ।

ବିଶ୍ୱଜିତ୍ ॥ ମୀନା ! ତମେ ହୋସ୍‌ରେ ନାହଁ । ରାତିବେଶୀ ହେଲଣି, ତମ ମୁଣ୍ଡ କାମ କରୁନି ।

ମୀନା ॥ ଭଲ ହେଲା, ମୁଁ ସନ୍ଦେହୀ ଲୋକଙ୍କ ପାଖରେ ଚଳିପାରିବନି ।

ବିଶ୍ୱଜିତ୍ ॥ ଆମେ ତା' ହେଲେ ଏଇଠି ଗଣ୍ଡଗୋଳ କରିବା ?

(ହଠାତ୍ ବୁଲ୍‌ବୁଲ୍ ପ୍ରବେଶ କଲା)

ବୁଲ୍‌ବୁଲ୍ ॥ ମୋର ବିନା ଅନୁମତିରେ ଉପରକୁ ଉଠିବାକୁ କିଏ ଯାଇଥିଲା ?

ବିଶ୍ୱଜିତ୍ ॥ ଉପରକୁ ?

ବୁଲ୍‌ବୁଲ୍ ।। ହଁ ଉପରକୁ ।
ମୀନା ।। କ'ଣ ହୋଇଗଲା ସେଇଠୁ ?
ବୁଲ୍‌ବୁଲ୍ ।। ଆପଣ ଯାଇଥିଲେ ତା'ହେଲେ ? କ'ଣ ଆନନ୍ଦ ମିଳିଲା ?
ବିଶ୍ୱଜିତ୍ ।। ମିଏ ଯାଇଥିଲା ତାକୁ ପଚାର ।
ମୀନା ।। କାହିଁକି ? ଖୋଜିବା ପାଇଁ ତମେ ବି ତ ଯାଇଥିଲ ।
ବୁଲ୍‌ବୁଲ୍ ।। କ'ଣ ପାଇଲ ?
ବିଶ୍ୱଜିତ୍ ।। ମୀନାକୁ । ମୀନାକୁ ମୁଁ ପ୍ରଥମ ଥର ପାଇଁ ସେଇଠି ଆବିଷ୍କାର କଲି ।
ବୁଲ୍‌ବୁଲ୍ ।। ମୀନା ତମକୁ କେମିତି ଲାଗିଲା ?
ବିଶ୍ୱଜିତ୍ ।। ତମକୁ କହିବା ପାଇଁ ମୁଁ ବାଧ୍ୟ ?
ବୁଲ୍‌ବୁଲ୍ ।। କହିବ ! ମୁଁ ତମର ଜଗୁଆଳି । ତମେମାନେ ଯୋଉଠି ବାଟଭୁଲି ଅମଡ଼ା ବାଟରେ ଯିବ, ମୁଁ ସେଇଠି ଆସି ପହଞ୍ଚିଯିବି । କହ—ତମର ଆବିଷ୍କାର କ'ଣ ?
ବିଶ୍ୱଜିତ୍ ।। ଉପରର ସେଇ ଅନ୍ଧାର ଘରଗୁଡ଼ାକର ଇନ୍ଦ୍ରଜାଲ ଭିତରେ ମୁଁ କିଛି ଦେଖିପାରିଲି ନାହିଁ । ତା'ପରେ ମୋର ମନେ ହେଲା ମୀନା ଏକ ରହସ୍ୟ ..'ଆନନ୍ଦ ନଗରର' ସୁଡ଼ଙ୍ଗ ଭଳି ରହସ୍ୟମୟୀ......ଭିତରକୁ ଗଲେ ଏକ ସମୁଦ୍ର ..କାମନାର ସମୁଦ୍ର !!
ବୁଲ୍‌ବୁଲ୍ ।। ଓଃ !! (ପେଟକୁ କାମୁଡ଼ି ଧରିଲା)
ମୀନା ।। କ'ଣ ହେଲା ?
ବୁଲ୍‌ବୁଲ୍ ।। ମୂଷାଟା .. ପୂର୍ଣ୍ଣି...
ମୀନା ।। ପେଟ ଭିତରେ ପଶିଗଲା...
ବୁଲ୍‌ବୁଲ୍ ।। (ଯନ୍ତ୍ରଣାରେ) ଓଃ !! କାଟି ପକେଇଲା ମୋ କଲିଜାଟାକୁ କାଟି ପକାଉଛି । ମତେ ଟିକିଏ ଧର...
ମୀନା ।। ଆଃ...ବହୁତ .. . ମତେ ଲାଗୁଛି ମୋ' ମନର ଯନ୍ତ୍ରଣା ଗୁଡ଼ାକ ତା'ର ଭିତରେ ମୂଷାହୋଇ ପଶିଯାଇଛି ।
ବୁଲ୍‌ବୁଲ୍ ।। ମତେ ଲାଗୁଛି ମୋ'ର କଲିଜା'ଟା ଯେମିତି ଟିକ୍‌ଟିକ୍ ହୋଇଯିବ...
ବିଶ୍ୱଜିତ୍ ।। ଠିକ୍ ମୋ' ମନର ଯନ୍ତ୍ରଣା ପରି !!
ମୀନା ।। ବର୍ତ୍ତମାନ ଟିକିଏ ଭଲ ଲାଗୁଚ ?
ବୁଲ୍‌ବୁଲ୍ ।। ସାମାନ୍ୟ, ଆଃ...ତମେ ଧରିଲା ପରେ ଟିକିଏ ଶାନ୍ତି ଲାଗିଲା...

[ତା'ପରେ ବୁଲ୍‌ବୁଲ୍ ଗୋଟିଏ ବୁକ୍‌କୁ କୋଟ ପକେଟରୁ ବାହାର କଲା । ବୁକ୍‌କୁ ଭିତରେ ଆଉ ଏକ ଡବା । ଡ଼ବା ଭିତରେ ଆଉ ଏକ ଡବା । ତା' ଭିତରେ ଆଉ ଏକ ଡ଼ବା ଏବଂ ତା' ଭିତରୁ ବାହାର କରି କ'ଣ ଗୋଟାଏ ଦେଲ ବଣ୍ଟିକନ୍ତୁଙ୍କୁ ଏବଂ ମୀନାକୁ]

ବୁଲ୍‌ବୁଲ୍ ।। ଏଇଟା ମେଘନାଦ ସାମନ୍ତ ଆପଣଙ୍କ ପାଇଁ ପଠେଇଛନ୍ତି !

ବଣ୍ଟିକନ୍ତୁ ।। ଏଇଟା କ'ଣ !

ମୀନା ।। ଚନାବାଦାମ୍ ।

ବୁଲ୍‌ବୁଲ୍ ।। ଦୁଇଟି ଚନାବାଦାମ୍ । ଗୋଟିଏ ବାବୁଙ୍କ ପାଇଁ ଆଉ ଗୋଟିଏ ମା'ଙ୍କ ପାଇଁ ।

ବଣ୍ଟିକନ୍ତୁ ।। କାହିଁକି ପଠେଇଛନ୍ତି ?

ବୁଲ୍‌ବୁଲ୍ ।। ଟାଇମ୍ pass । ଆପଣମାନେ କାଲେ ଏଠି ତାଙ୍କୁ ଅପେକ୍ଷା କରି କରି ବ୍ୟସ୍ତ ହୋଇ ପଡ଼ିବେଣି, ସେଥିପାଇଁ ତାଙ୍କର ଭଲ ପାଇବାର ନିଦର୍ଶନ ସ୍ୱରୂପ ସେ ଆପଣମାନଙ୍କୁ ଦୁଇଟେ ଚନାବାଦାମ୍ ଭେଟି ଦେଇଛନ୍ତି ।

ମୀନା ।। ଇଏ ପୁଣି ଆମକୁ ହଇରାଣ କରିବା ପାଇଁ ନ୍ୟୁ ପ୍ଲାନ୍ ।

ବଣ୍ଟିକନ୍ତୁ ।। ଶୀଘ୍ର ତମର ମେଘନାଦ ସାମନ୍ତଙ୍କୁ ପଠାଅ ।

ମୀନା ।। ଆମେ ବର୍ତ୍ତମାନ ତାଙ୍କ ସାଙ୍ଗରେ କଥାବାର୍ତ୍ତା କରିବାକୁ ଚାହୁଁ ।

ବଣ୍ଟିକନ୍ତୁ ।। ଗୋଟାଏ ବାଜେ ଘରେ ଆମକୁ ରଖେଇ, ଆମର privacy ଲୁଟ କରି ଗୋଟେ ଫାନ୍ଦ ଲଗେଇଛନ୍ତି !

ମୀନା ।। ଆମେ ବାହାରୁ ଆସିଛୁ ବୋଲି କଣ ଭାବୁଛନ୍ତି କହୁପାରୁନୁ—

ବଣ୍ଟିକନ୍ତୁ ।। ଆମ ଇସ୍ପାତ ନଗର ହୋଇଥିଲେ political pressure ପକେଇ ମୁଁ ତାଙ୍କୁ arrest କରିଦେଇ ପାରନ୍ତିଣି ।

ବୁଲ୍‌ବୁଲ୍ ।। ଆପଣଙ୍କ ଧାରଣା ସମ୍ପୂର୍ଣ୍ଣ ଓଲଟା । ଏଇ କିଛି ସମୟ ଆଗରୁ ଆପଣମାନେ ପରସ୍ପରଙ୍କୁ ସନ୍ଦେହ କରୁଥିଲେ । ଈର୍ଷା କରୁଥିଲେ । ଏପରିକି ଦୁହେଁ ଦୁହିଁଙ୍କ ଠାରୁ ଅଲଗା ହୋଇଯିବା ପାଇଁ ଚାହୁଁଥିଲେ । ମେଘନାଦ ସାମନ୍ତ ଆପଣଙ୍କର ଫାଟି ଯାଇଥିବା ମନକୁ ଯୋଡିବା ପାଇଁ ଚନାବାଦାମ୍ ଦୁଇଟି ପଠେଇଛନ୍ତି ।

ବିଶ୍ୱଜିତ୍ ।। ଆମେ ସ୍ୱାକୁ ନେଇ କ'ଣ କରିବୁ ?

ମୀନା ।। ସିଧା ବାହାରକୁ ଫୋପାଡ଼ି ଦେବୁ ।

ବୁଲ୍‌ବୁଲ୍ ।। ନା, ବର୍ତ୍ତମାନ ନୁହେଁ । ଆଉ ଟିକିଏ ପରେ...

ବିଶ୍ୱଜିତ୍ ।। ମାନେ !

ବୁଲ୍‌ବୁଲ୍ ।। ଚିନାବାଦାମ୍‌ଟା କ'ଣ କରିବାକୁ ହୁଏ ଜାଣିନାହାନ୍ତି ? Okay, ଅନେକ ଲୋକ ଏମିତି ଅନେକ କଥା ଜାଣି ନଥାନ୍ତି । ଶୁଣନ୍ତୁ, ମୁଁ ଚିନାବାଦାମ୍‌ର mechanism ଟା କହି ଦେଉଛି । (ଗଳା ସଫାକରି) ଦେଖନ୍ତୁ । (ସମସ୍ତଙ୍କୁ ଦେଖାଇ) ଏହାକୁ ଚିନାବାଦାମ୍ କୁହାଯାଏ । ଚିନାବାଦାମ୍ ହେଲା ଗୋଟିଏ କଟକଣା ଶବ୍ଦ । ଦକ୍ଷିଣ ଓଡ଼ିଶାରେ ଏହାକୁ ଭୁଇଁଚଣା କୁହାଯାଏ । ପଶ୍ଚିମ ଓଡ଼ିଶାରେ ମୁଁଫଲି । ଏହା ଦେଖିବାକୁ ଈଷତ୍ ଧଳା, କିମ୍ବା ମାଟିଆ, କିମ୍ବା ଫିକା । ପଡ଼ିଯାଇଥିବା ହଳଦିଆ..ସେ ଯାହା ହେଉ ଏହାର ଗୋଟିଏ ରଙ୍ଗ ଅଛି । ଏହାକୁ କଡ଼େଇରେ ବାଲି ପକେଇ ଭଜାଯାଏ । ମନେ ରଖନ୍ତୁ ତେଲ ପକେଇ ଭଜାଯାଏ ନାହିଁ । ଚିନାବାଦାମ୍ ହେଲେ ତେଲର ବୀଜ ଅବତାର । ତେଣୁ ତାକୁ ଅଧିକ ତେଲ ଦେଇ ଭାଜିଲେ ଦେଶରେ ଗଣତନ୍ତ୍ର ଓ ସମାଜବାଦ କ୍ଷୁଣ୍ଣ ହେବାର ଆଶଙ୍କା ଅଛି । ସେ ଯାହାହେଉ ଭାଜି ସାରିଲା ପରେ ୧୦ ମିନଟ୍ ପର୍ଯ୍ୟନ୍ତ ତାକୁ ଥଣ୍ଡା ହେବା ପାଇଁ ଦିଅନ୍ତୁ । ତା'ପରେ ଆପଣ ଖୋଳଟି ଛଡ଼େଇବେ । ଖୋଳ ଛଡ଼େଇବା ସମୟରେ ଗୋଟିଏ ଫଟ୍ କରି ଶବ୍ଦ ହେବ । ଆପଣ ଡରିଯିବେ ନାହିଁ । ଧୈର୍ଯ୍ୟ ଧରି ଚୋପା ଛଡ଼େଇବେ । ଆପଣମାନେ ଆନନ୍ଦ ଖୋଜୁଥିବା ଲୋକ । ଚୋପା କ'ଣ ବୁଝିପାରୁଥିବେ । ଆପଣଙ୍କ ଆତ୍ମା ପାଇଁ ଦେହ ଗୋଟିଏ ଚୋପା । ଆଶା କରୁଛି ବର୍ତ୍ତମାନ ଆପଣ କଥାଟା ବୁଝିପାରିଲେ । ହଁ, ଚୋପାଟି ଛଡ଼େଇଲା ପରେ ମ୍ୟାଜିକ୍ ଭଳି ତା' ଭିତରୁ ଦୁଇଟି କିମ୍ବା ତିନୋଟି କିମ୍ବା ଝ୍ୱଚେଟି କିମ୍ବା ଗୋଟିଏ ମଞ୍ଜି ବାହାରିବ । ତାହା ଆପଣଙ୍କ ଭାଗ୍ୟର କଥା । ମଞ୍ଜିର ରଙ୍ଗ ନାଲିଆ । ବର୍ତ୍ତମାନ, କ'ଣ କରିବେ ବାବୁଜୀ ? ଚୋପା ଭିତରୁ ବାହାରିଥିବା ମଞ୍ଜିକୁ ହାତରେ ମଳିବେ । 'ସାଗର ମନ୍ଥନ', ତା'ପରେ ବାହାରିବ ଅମୃତ । ବିଷ ମଧ୍ୟ ବାହାରିପାରେ । ତାହା ଆପଣଙ୍କର ଭାଗ୍ୟର କଥା । ଆପଣ ତେଲ ଦେଇଁଲେ ତେଲିଆ ମଞ୍ଜି ବାହାରିବ । ଆପଣଙ୍କ ଆତ୍ମା ଯଦି ପୋଡ଼ଖିଆ ଆତ୍ମା ହେଇଥିବ ତା'ହେଲେ ଝଡଗ୍ ମଞ୍ଜି ମିଳିବ । ଆଉ ପାପୀ ଲୋକଙ୍କର ଭାଗ୍ୟରେ ପୋଡ଼ା, କାଳିଆ ମଞ୍ଜି ମିଳେ । ଆଉ ଭାଗ୍ୟରେ ଥିଲେ ଅମୃତ ଭଳି ଦୁଧିଆଳି ମଞ୍ଜି ମିଳିବ ।

ନାଲିଆ ଟ୍ରେପାଟିକୁ ଫୋପାଡ଼ି ଦେଇ ଦୁଧିଆଳି ମଞ୍ଜିଟିକୁ ଖାଇବେ ।
(ତା'ପରେ ପ୍ରାର୍ଥନା କଲା ଭଳି) ଓଁ ଶାନ୍ତିଃ ଓଁ ଶାନ୍ତିଃ ଓଁ ଶାନ୍ତିଃ...
(ବୁଲ୍‌ବୁଲ୍ ବ୍ଲକଗଲା)

ମୀନା || ଓଃ !

ବଶ୍ୱଜିତ୍ || କ'ଣ ହେଲା ?

ମୀନା || ମୂର୍ଚ୍ଛନା ବନ୍ଦ ହୁଏ !

ବଶ୍ୱଜିତ୍ || ହେ ଭଗବାନ୍ ! ଏ boredomରୁ ଆମକୁ ବଞ୍ଚାଅ ।

ମୀନା || ବଧ ସେ ଚନାବାଦାମ୍ ।

ବଶ୍ୱଜିତ୍ || କ'ଣ କରିବ ?

ମୀନା || ଫୋପାଡ଼ି ଦେବ ବାହାରକୁ ।

ବଶ୍ୱଜିତ୍ || ଚନାବାଦାମ୍‌ଟା କ'ଣ ହେଇପାରେ ?

ମୀନା || ଯଦି ଭିତରେ ବସିଦେଇ ଯବ ଆମକୁ ମାରିଦେଇ ସେମାନେ ଆମର ଟଙ୍କା ପଇସା ଓ ସୁନା ନେଇଯିବେ ?

ବଶ୍ୱଜିତ୍ || ତା'ହେଲେ କ'ଣ କରିବା ? ବୁଲ୍‌ବୁଲ୍ କହୁଥିଲା ମେଘନାଦ ସାମନ୍ତ କୁଆଡ଼େ ଆମକୁ ଦେଖା କରିବାକୁ ଆସିବ !

ମୀନା || ଏ ବୋଉଲେ ! ତାକୁ ମତେ ଡ଼ର ମାଡ଼ିବ ।

ବଶ୍ୱଜିତ୍ || ତା' ହେଲେ ?

ମୀନା || ଚାଲ ଆମେ ଏଇଠୁ ପଳେଇବା...

ବଶ୍ୱଜିତ୍ || କେମିତି ଯିବା ? ସିଏ ଜାଣିପାରିବ !

ମୀନା || ଆମେ ତା'ହେଲେ ଏଇଠି ସକାଳ ହେବା ପର୍ଯ୍ୟନ୍ତ ଅପେକ୍ଷା କରିବା ?

ବଶ୍ୱଜିତ୍ || ଆଉ ଉପାୟ ନାହିଁ ।

[ହଠାତ୍ ମଞ୍ଚର ଆଲୋକ ସବୁ ଏକ ଅତି ବାସ୍ତବ Surrealistic ଆଲୋକରେ ରୂପାନ୍ତରିତ ହେଲେ ! ଅଜବ ସଙ୍ଗୀତ ଏକ ଦୂରାଗତ ସ୍ୱପ୍ନପରି ମନେ ହେଲା ଏବଂ ଶୁଭିଲା ଫଟିକ୍ ଦାସ୍‌ଙ୍କ ସ୍ୱର... ..]

ଟକିକ୍ (ସ୍ୱର) ॥ ପିପିଲି, କୋଣାରକ୍, ଭୁବନେଶ୍ୱର, ଧବଳେଶ୍ୱର, କେଦାରଗୌରୀ, ବିନ୍ଦୁ ସରୋବର. ସିଦ୍ଧେଶ୍ୱର ଟେଂପୁଲ୍, ମୁକ୍ତେଶ୍ୱର ଟେଂପୁଲ୍, ଉଦୟଗିରି...ଖଣ୍ଡଗିରି ନନ୍ଦନକାନନ୍ (Fade out)

ମୀନା ॥ କେତେ ସବୁ ସୁନ୍ଦର ଜାଗା ଏ ପୃଥିବୀରେ ଅଛି ।

ବିଶ୍ୱଜିତ୍ ॥ ସେସବୁ ସକାଳ ଭଳି ଅନିର୍ଦ୍ଦିଷ୍ଟ ସ୍ଥାନ ।

ମୀନା ॥ ହଁ'ଟା Advance ticket କାଟି ଦେଇଥିଲେ ଚାଲିଥାନ୍ତା ।

ବିଶ୍ୱଜିତ୍ ॥ ଗାଇଡ୍ ନାହିଁ ବୋଲି କହୁଥିଲ । ଆମେ ଯଦି ସେଇ ଜାଗାମାନଙ୍କ ଭିତରେ ପୁଣି ହଜିଯିବା ?

ମୀନା ॥ ମୁଁ ତମ ସାଙ୍ଗେ ସାଙ୍ଗେ ଥିବି.. ତମ ହାତ ଧରି ତମ ନିଶ୍ୱାସର ଉତ୍ତାପରେ ନିଜକୁ ତରଳେଇ ଦେଇ...

ବିଶ୍ୱଜିତ୍ ॥ ମୁଁ ଭାବୁଥିଲି ଏଇ ଅନ୍ଧାରର ଦ୍ୱୀପ ଉପରେ ନ ଯିବାଲେ ସକାଳ ଦିଶିବନି ।

ମୀନା ॥ ମନେ ହେଉଛି ହଠାତ୍ ଆମପାଇଁ ସମୟ ଖୁବ୍ ଧୀରେ ଧୀରେ ଗତି କରୁଛି ।

ବିଶ୍ୱଜିତ୍ ॥ ମୋର ମନେ ହେଉଛି ମୁଁ ଯେମିତି ପଛକୁ ଫେରିଯାଉଛି !

ମୀନା ॥ କେତେ ପଛକୁ ?

ବିଶ୍ୱଜିତ୍ ॥ ମୋର ଅନେକ କଥା ମନେ ପଡ଼ୁଛି । ହେଇପାରେ ମୁଁ ପୂର୍ବ ଜନ୍ମରେ ଏଇ 'ଆନନ୍ଦ ନିଳୟ'କୁ ଆସିବା ପାଇଁ ଭାବିଥିଲି । ଆଚ୍ଛା, ମୁଁ ଏଠାର କୋଠରୀ ଭିତରେ ବୁଲିବୁଲି ନିଜ ପାପ ପାଇଁ ପୁଣି ଫେରି ଆସିଛି ଅନେକ ଥରକୁ...

ମୀନା ॥ ଆଡ଼ାମ୍ ଆଣ୍ଡ ଇଭ୍ ଫେରିଆସିଲେ ଭଳି ।

ବିଶ୍ୱଜିତ୍ ॥ Paradise is lost.

ମୀନା ॥ ସେଥିପାଇଁ ଆମେ ନନ୍ଦନକାନନ ଯାଇପାରିଲେ ନାହିଁ ।

ବିଶ୍ୱଜିତ୍ ॥ ଏବଂ ଏଇଠି ଆନନ୍ଦ ନିଳୟ ଭିତରେ ବନ୍ଦୀ ହୋଇଗଲେ ।

ମୀନା ॥ ତମେ ପୂର୍ବ ଜନ୍ମରେ ଏଇଠିକି ଆସିଥିଲ ?

ବିଶ୍ୱଜିତ୍ ॥ (ମନେ ପକାଇଲି ଭଳି) ହଁ । ଯ୍ୱାର ଭିତରେ ଗୋଟାଏ ସୁଡ଼ଙ୍ଗ ଅଛି ।

ମୀନା ॥ ସୁଡ଼ଙ୍ଗ କ'ଣ ?

ବିଶ୍ୱଜିତ୍ ॥ ପାହାଚ ସାହାଚ ହୋଇ ଅନେକ ପାହାଚ ଓହ୍ଲାଇଯାଇଥିବ ଅନେକ ତଳକୁ । ତା'ପରେ କ'ଣ ଅଛି ଜଣାନାହିଁ । ଅଥଚ ସେ ଆମକୁ ଆକର୍ଷଣ କରେ । ଏକ ଜୀବନମୟ ରହସ୍ୟ ଭଳି ।

ମୀନା ।। ସେଇବାଟେ ଦେଇ ତଳକୁ ଗଲେ ସକାଳ ମିଳିବ ?

ବିଶ୍ୱଜିତ ।। ଭୟଙ୍କର ଅନ୍ଧାର ଥରେ ତା' ଭିତରକୁ ଗଲେ ଆଉ ଫେରି ହେବନି ।

ମୀନା ।। ମତେ ଡର ମାଡ଼ୁଛି, ଆଃ !! ହୁଏତ ମୁଁ ଭୟରେ ମୂର୍ଚ୍ଛା ହୋଇଯିବି ।

ବିଶ୍ୱଜିତ ।। ତା' ହେଲେ ଏଇଠି ରହିବା ପାଇଁ ବ୍ୟବସ୍ଥା କର ।

ହଠାତ୍ ଏକ ଭୟଙ୍କର ଶବ୍ଦ ହେଲା । ଆବହ ସଙ୍ଗୀତ ଖୁବ୍ ଓ ଗମ୍ଭୀର ଏବଂ ତା'ପରେ ଶୁଭିଲା ଭିତର ଲୋକର ସ୍ୱର ।

ଭିତରଲୋକ ।। Your attention please !

ଆନନ୍ଦ ଖୋଜୁଥିବା ଲୋକଙ୍କ ପାଇଁ ଗୋଟିଏ ଘୋଷଣା । ଆସନ୍ତା ଦୁଇମିନିଟ୍,ଭିତରେ ଆନନ୍ଦ ଖୋଜୁଥିବା ଲୋକମାନଙ୍କ ମନରେ ଏକ ଲଘୁଚ୍ଚାପ ସୃଷ୍ଟି ହେବ ଏବଂ ତା'ଫଳରେ ମଞ୍ଚ ଉପରେ ମେଘନାଦ ସ୍ୱୟଂ ଅବତୀର୍ଣ୍ଣ ହେବେ । ମେଘନାଦ ସାମନ୍ତଙ୍କୁ ଦେଖି କେହି ଯେପରି ନ ଡରନ୍ତି ସେଥିପାଇଁ ଜଗୁଆଳ ବୁଲ୍ ବୁଲ୍ ହାଜରା କଡ଼ା ନଜରର ବ୍ୟବସ୍ଥା କରିଛନ୍ତି । ଘୋଷଣାଟି ଏତିକରେ ଶେଷ ହେଲା ।

ମୀନା ।। ଏ ହୋଉ ! ବର୍ତ୍ତମାନ ମୁଁ କ'ଣ କରିବ ?

ବିଶ୍ୱଜିତ୍ ।। ତମେ ଧୈର୍ଯ୍ୟ ଧର । ପ୍ରଥମେ ପ୍ରଥମେ ସମସ୍ୟା ଗୁଡ଼ିକୁ ଦେଖିଲେ ମଣିଷ ଡ଼ରିଯାଏ ।

ମୀନା ।। ତା'ପରେ ?

ବିଶ୍ୱଜିତ୍ ।। Compromise. ଘଟଣା ଓ ପରିମଣ୍ଡଳ ସହିତ adjustment.

ମୀନା ।। ସମାଜରେ ଆମର ପ୍ରତିପତ୍ତି ଅଛି । ତମ ବାପା powerରେ ଥିଲେ । ମୋ' ବାପାଙ୍କର କୋଟି କୋଟି ଟଙ୍କାର ସମ୍ପତ୍ତି । ତଥାପି ଆମେ ଏହି ପରିସ୍ଥିତି ସହିତ ଲଢିଯିବା ?

ବିଶ୍ୱଜିତ୍ ।। ଉପାୟ ନାହିଁ ।

ମୀନା ।। ତା'ହେଲେ ?

ବିଶ୍ୱଜିତ୍ ।। ତମେ wash up ହୋଇ ଖାଇବା ବ୍ୟବସ୍ଥା କର ।

ମୀନା ।। ତା'ପରେ ?

ବିଶ୍ୱଜିତ୍ ।। ତା'ପରେ ଆମେ ଆସୁଥିବା ଘଟଣାମାନଙ୍କ ପାଇଁ ଅପେକ୍ଷା କରିବା ଯାଅ — ତମେ ବର୍ତ୍ତମାନ Bath Room କୁ ଯାଅ—

ମୀନା । ମତେ ଡ଼ର ମାଡ଼ୁଛି । ସେଇଠି ଆଲୁଅ ନାହିଁ ।

ବିଶ୍ୱଜିତ୍ । ଭୂତ ଆସିବ ?

ମୀନା । ଯଦି ଆସିଯାଏ ହଠାତ୍‌ରେ ?

ବିଶ୍ୱଜିତ୍ । ଯେମିତି ଯୁବନାସ୍ୱର ଭୂତ ତମକୁ କିଛି ସମୟ ପାଇଁ ଗ୍ରାସ କରିଥିଲା ।

ମୀନା । ଏବଂ ତମକୁ ମଧ୍ୟ ।

ବିଶ୍ୱଜିତ୍ । Silly. ବାଜେ କଥା । ଭୂତ କ'ଣ ?

ମୀନା । କିଏ ଜାଣେ । ନିଜ ଅତୀତଟା ମଧ୍ୟ ଗୋଟିଏ ଭୂତ ।

ବିଶ୍ୱଜିତ୍ । ଶୁଣ ମୀନା, ଅତୀତଟାକୁ ପଲିଷ୍ଟର ଶାଢ଼ି ଭଳି ଜାକିଜୁକି ସେଇ ଷ୍ଟିଲ୍ ଟ୍ରଙ୍କ୍ ଭିତରେ ରଖିଦିଅ ଏବଂ ତା' ଭିତରୁ ବାସନ୍ତୀ ରଙ୍ଗର ଶାଢ଼ିଟା ନେଇ ବଦଳେଇ ପକାଅ—ମେଘନାଦ ସାମନ୍ତ ଢୁକୁଛନ୍ତି । ଯାଅ—ଶୀଘ୍ର !

[ମୀନା ଶାଢ଼ି ନେଇ Bath Roomକୁ ଗଲେ । ବିଶ୍ୱଜିତ୍ ଖଣ୍ଡେ ସିଗାରେଟ୍ ଲଗାଇଲେ । ତା' ମନରେ ଭୀଷଣ ଭୟ । ମଞ୍ଚର ବ୍ୟାକ୍‌ପଟରୁ ପ୍ରବେଶ କଲେ ଭିକାରିଚରଣ, ତା'ପରେ ଯୁବନାସ୍ୱ, ତା'ପରେ ବୁଲ୍‌ବୁଲ୍ ଏବଂ ତା'ପରେ ଚନ୍ଦନ ପ୍ରହରାଜ]

ଭିକାରି । ଦେଖ ଗୋ ..ଏ ମଙ୍ଗୀ ଦେଖ ଗୋ'

ସୁଧା ମାଧେବ ଷ୍ଟୁଲି ..

କେମିତି ବୁଝିବ କେଡ଼େ ମିଠା ଚୋର

ଅଢ଼େଇ ଟଙ୍କିଆ ସ୍ୱବଡ଼ ଓଲି ॥

ଜୟ ଜଗନ୍ନାଥ ଆଜ୍ଞେ ! କ'ଣ ବାବୁ ? ଆନନ୍ଦ ଷ୍ଟେସନରେ ପହଞ୍ଚିଗଲେ ?

ବିଶ୍ୱଜିତ୍ । ଭିକାରି !! ମୁଁ ବଡ଼ ଅସହାୟ, ଏଇଠି ମତେ ଭୀଷଣ ଡ଼ର ମାଡ଼ୁଛି ।

ଭିକାରି । ଆନନ୍ଦ ପାଇବା ପାଇଁ ଡ଼ର ?

ବିଶ୍ୱଜିତ୍ । ଆନନ୍ଦ କ'ଣ ଏୟା ?

ଭିକାରି । କ'ଣ ଟଙ୍କା ପଇସାର ମଉଜ ?

(ଯୁବନାସ୍ୱର ପ୍ରବେଶ)

ସବନସ୍ତ ।। ସବୁ ପଛ କଥା ଭୁଲିଯାଅ ବିଶ୍ୱଜିତ୍ ... ଅତୀତର ସ୍ମୃତି ଅଳନ୍ଧୁଲିଳ । ତାକୁ ସଙ୍ଗେ କରିଦିଅ—ପରସ୍ତ ପରସ୍ତ ସ୍ନାୟୁର ଆସ୍ତରଣ ସଙ୍ଗେ ନହେଲେ ତାଙ୍କ ଧାଣିବନ୍ଧ ।

ବିଶ୍ୱଜିତ୍ ।। ତମେ ତ ପୁଣି ମତେ ପଛକୁ ଫେରାଇ ନେଲ !

ସୁବନସ୍ତ ।। ତମକୁ ପରୀକ୍ଷା କରୁଥିଲି—ତମେ କେତେ ଶୀଘ୍ର ମୋହମୁକ୍ତ ହୋଇପାରୁଛ !

ବିଶ୍ୱଜିତ୍ ।। ମୁଁ ତାଙ୍କ ଭୁଲିଯାଉଛି ।

ସୁବନସ୍ତ ।। ସବୁ ଆନନ୍ଦ ଖେଳାଳୀଙ୍କର ଚେଷ୍ଟା ହୁଏ...ଡର ନାହିଁ ।

ବିଶ୍ୱଜିତ୍ ।। ମୁଁ.. ମୁଁ ବର୍ତ୍ତମାନ କ'ଣ କରିବି ।

(ଚନ୍ଦନ ପ୍ରହରୀଙ୍କଙ୍କର ପ୍ରବେଶ)

ଚନ୍ଦନ ।। କ'ଣ କରିବ ? ତମେ unfit...ସମ୍ପୂର୍ଣ୍ଣ ଅନୁପଯୁକ୍ତ । ତମର ମୁକ୍ତି ପାଇଁ ଫଟିକ୍ ଡାସ୍‌କୁ ପଠେଇ ଥିଲି—ତମେ ଅନ୍ତିମ ଟିକଟ କରିପାରିଲ ନାହିଁ...

ବିଶ୍ୱଜିତ୍ ।। ମୀନା...ମୀନା ମନା କଲା...

ଚନ୍ଦନ ।। ମୁକ୍ତିର ମାନଚିତ୍ର ଦେଖିଜାଣିନାହଁ ତମେ...ଖାଲି ଅନ୍ଧାରରେ ବାଣ୍ଟି ବୁଲେଇ ଚୁଲିଛ...

ବିଶ୍ୱଜିତ୍ ।। ଅନ୍ଧାର ଘୁଞ୍ଚିପଡ଼େ ଅନ୍ଧାର...ମୁଁ ବାଟ ପାଉନାହିଁ ।

ଚନ୍ଦନ ।। ତମର Air Conditioned ଯାତ୍ରା ତା'ହେଲେ ଶେଷ ହୋଇଗଲା ?

ବିଶ୍ୱଜିତ୍ ।। ନା । ଜୀବନ ଏକ ମହାଯାତ୍ରା......ଜନ୍ମ ପରେ ମୃତ୍ୟୁ...ପରେ ଜୀବନ... ପରେ ମୃତ୍ୟୁ ..ପରେ ଜୀବନ . ...ଏକ ଭୀଷଣ ପୁର୍ଣ୍ଣାପ୍ୟମାନ ପାପଚକ୍ର—ତା' ଭିତରୁ...

ଚନ୍ଦନ ।। ସେ ମାନ୍ଛ ସେଟ ଗଣ୍ଡିରର/ସେ ପିନା ଚକ୍ରେ ପାରିବାର...ହାଃ ହାଃ... ହାଃ...ତମର ଫର୍ମୁଲା ଭୁଲ ବିଶ୍ୱଜିତ୍...ତମର ଫର୍ମୁଲା ପୁରାପୁରି ଭୁଲ ପ୍ରମାଣିତ ହୋଇଗଲା ।

(ମୀନା ଫେରିଆସିଛି ଓ ଭୀଷଣ ଡ଼ରିଯାଇ)

ମୀନା ।। ଆଃ.. !!

ବିଶ୍ୱଜିତ୍ ।। କ'ଣ ହେଲା ?

ମୀନା ।। ତମକୁ ସେମାନେ—ସେମାନେ କାହିଁକି ଏମିତି ଘେରି ରହିଛନ୍ତି ?

ବିଶ୍ୱଜିତ୍ ।। ପରୀକ୍ଷା...

[ ମେଘନାଦ ସାମନ୍ତ ଝଡ଼ଭଳି ପ୍ରବେଶ କଲେ ଘର ଭିତରକୁ । ହାତରେ ସେଇ ବାଆ । ହଠାତ୍ ଆବହ ସଙ୍ଗୀତ ପରିବର୍ତ୍ତିତ ହେଲା । ସେଇ ବାଘ ନାଚର ତାଳ । ମୁହଁରେ ତାଙ୍କର ଭୟଙ୍କର ହସ— ]

ମେଘନାଦ ।। Hands up !!

ମୀନା ।। ଆ—!!

ବଶିଷ୍ଠ ।। କଣ !!

ମେଘନାଦ ।। ଚିହ୍ନି ପାରୁନ ? ମୁଁ ମେଘନାଦ ସାମନ୍ତ । ହାତ ଉପରକୁ ଉଠାଅ—

ବଶିଷ୍ଠ ।। କାହିଁକି ?

ମେଘନାଦ ।। Surrender...ଆତ୍ମ ସମର୍ପଣ !!

ବଶିଷ୍ଠ ।। ମୁଁ ଯଦି ଆତ୍ମ ସମର୍ପଣ ନ କରେ...?

ମୀନା ।। Please...ତମେ ବିପଦକୁ ଡାକିଆଣ ନାହିଁ ।

ବଶିଷ୍ଠ ।। ଯାହାହବ ହେଇଯାଉ—ସାମାନ୍ୟ ଗୋଟାଏ Lodging House ର manager ଆଗରେ ମୁଁ ଡରିବି ନାହିଁ...

ମେଘନାଦ ।। (ଠାରରେ ହାତ ତାଳି ମାରିଲେ ଏବଂ ସମସ୍ତେ ଚୁପ୍‌ହେଲେ । ପୁଣି ତାଳି ମାରିଲେ ସେମାନେ ଆସିବେ)

ଆନନ୍ଦ ଖୋଜିବା ପୂର୍ବରୁ ତମର ସମସ୍ତ ଅହଂକୁ ବଳି ଦେବାକୁ ପଡ଼ିବ । ସ୍ନାୟୁର ଉତ୍ତେଜନାମାନଙ୍କୁ ଶୀତଳ କରିବାକୁ ପଡ଼ିବ । ତମର ଅର୍ଥ, କାମ, ପ୍ରେମ, ମମତାକୁ ଜଳାଞ୍ଜଳି ଦେବାକୁ ପଡ଼ିବ......Total disarmament ..ନିରସ୍ତ୍ରୀକରଣ ଆନନ୍ଦ ପାଇବାର ପ୍ରଥମ ସୋପାନ ।

ବଶିଷ୍ଠ ।। ଆପଣ ଚକ୍ରାନ୍ତ କରି ଆମକୁ ଏଇଠିକି ଡାକିଆଣି ...

ମେଘନାଦ ।। ପ୍ରହରୀ !!

ବୁଲ୍‌ବୁଲ୍ ।। (ପ୍ରବେଶ କରି) ହଜୁର୍ !

ମେଘନାଦ ।। ଏମାନଙ୍କର ଅସୁବିଧା କ'ଣ ?

ବୁଲ୍‌ବୁଲ୍ ।। ଦ୍ୱନ୍ଦ, ଅନ୍ତର୍ଦ୍ୱନ୍ଦ । ଏମାନେ ଦୁଃଖକୁ ଆନନ୍ଦ ମନେ କରନ୍ତି ।

ବଶିଷ୍ଠ ।। Shut up !!

ମେଘନାଦ ।। (ବଜ୍ର ଭଳି ହସିଲେ)

ମୀନା ।। ଆପଣ ଯାହା କହିବା କଥା ମତେ କୁହନ୍ତୁ

ମେଘନାଦ ।। ତମେ ସବୁ ନୈତିକ ପତନର କାରଣ ।

ମୀନା ।। ଅଭଦ୍ର ! ଆପଣ ଜଣେ ଭଦ୍ରମହିଳାଙ୍କ ସହ କିପରି କଥାବାର୍ତ୍ତା କରିବାକୁ ହୁଏ ଜାଣିନାହାନ୍ତି !

ମେଘନାଦ ।। ଭଦ୍ରତା, କଥାବାର୍ତ୍ତାର କାଇଦା...ବାହାରକୁ ଦେଖାଇବା ପାଇଁ ଗୁଡ଼ାଏ ମୁଖା !! Sophistication ....ଏଗୁଡ଼ାକୁ ନେଇ କେତେ ଦିନ ବଞ୍ଚିବ ?

ବିଶ୍ୱଜିତ୍ ।। ସେ ଉପଦେଶ ଶୁଣିବା ପାଇଁ ଆମେ ଏଠିକି ଆସିନୁ । ସଭ୍ୟତାର ଗତି ଯେଉଁଆଡ଼େ ଆମେ ସେଇ ରାସ୍ତାରେ ଯିବାପାଇଁ ବାଧ୍ୟ ।

ମେଘନାଦ ।। 'ଆନନ୍ଦ କଳସ'ରେ ଯୌନ କାମନା ଚରିତାର୍ଥ କରିବା ପାଇଁ କେହି ଆସନ୍ତି ନାହିଁ ।

ମୀନା ।। ତା'ହେଲେ ସମୁଦ୍ର କୂଳରେ ଏଇଥିକୁ ଗୋଟାଏ ଖୋଲିଛନ୍ତି କାହିଁକି ? ଲୋକଙ୍କୁ ଡ଼ାକି ଆଣି ଏମିତି ହଇରାଣ କରିବା ପାଇଁ ?

ବିଶ୍ୱଜିତ୍ ।। Swindle କରିବା ପାଇଁ ?

ମୀନା ।। ମୁଁ କୋଉ ଶାଢ଼ି ପିନ୍ଧିବି, କୋଉ ଗହଣା ପିନ୍ଧିବି, ଲୁଚି ଲୁଚି ଦେଖିବା ପାଇଁ ?

ମେଘନାଦ ।। ମୁଁ ସବୁ ଦେଖିପାରେ । ସବୁ ଜାଣିପାରେ ।

ବିଶ୍ୱଜିତ୍ ।। କ'ଣ ଜାଣିଛନ୍ତି ?

ମେଘନାଦ ।। ତମେ ଦୁ'ଟା ସ୍ୱାର୍ଥପର, ଚୋର । ତମେ ଦୁ'ଜଣ ଏ ପୃଥିବୀରୁ ଅନେକ କିଛି ଚୋରିକରି ନେଉଛ—ଫୁଲରୁ ସୁଗନ୍ଧ, ପତ୍ରରୁ ସବୁଜିମା, ଆକାଶରୁ ନୀଳିମା, ସୂର୍ଯ୍ୟରୁ ଉତ୍ତାପ...ତମ ପରିମଣ୍ଡଳ ଭିତରେ ଯିଏ ରହିବ ଯନ୍ତ୍ରଣା ଛଡ଼ା ଆଉ କିଛି ପାଇବ ନାହିଁ । ତମେ ଆନନ୍ଦ କ'ଣ ପାଇବ...ତମ ପାଖରେ ବଞ୍ଚିବା ଲୋକ ଆନନ୍ଦ ପରିବର୍ତ୍ତେ ଯନ୍ତ୍ରଣା ପାଇବ.......
ବୁଲ୍ ବୁଲ୍ !!

ବୁଲ୍‌ବୁଲ୍ ।। ଓଃ !! ପୁଣି ମୁଖା...

ବିଶ୍ୱଜିତ୍ ।। ଆମେ ପଥିକ । ଆମର ଉଦ୍ଦେଶ୍ୟ ମହତ...ଆମେ ଅତିଭୌତିକ ପଥର ଯାତ୍ରୀ । ଆମେ ଆଗାମୀ ପୃଥିବୀର ମଣିଷମାନଙ୍କପାଇଁ ନୂତନ ବାର୍ତ୍ତା ଆଣିବା ସକାଶେ ଏଠିକି ଆସିଛୁ ।

ମେଘନାଦ ।। ବଞ୍ଚିବା...ପବିତ୍ରତା...ଆନନ୍ଦ...କ'ଣ ସବୁ ଶବ୍ଦ ତମେମାନେ ଉଚ୍ଚାରଣ କରୁଛ ? ଜୀବନ ସାରା ତମେ ଖୋଜିବ...କିନ୍ତୁ କିଛି ମିଳିବନି । ଖାଲି ବ୍ୟଭିଚାର, ଈର୍ଷା ଓ ପାପର ଗର୍ତ୍ତ ଭିତରକୁ ବାରମ୍ବାର ଗୋଡ଼ ଖସେଇ ଯିବାର ଏକ କରୁଣ ବ୍ୟତିକ୍ରମ ଛଡ଼ା ଆଉ କ'ଣ ଅଛି ତମମାନଙ୍କ ପାଖରେ ? ମୋ' ହାତରୁ ଏଇ ଡାଆଟିକୁ ଛଡ଼େଇ ନେଇ ତମେ ଠିକ୍ ଠିକ୍ କରି ଭାଙ୍ଗି ପକେଇଛ ଏ ଶତାବ୍ଦୀର ମୂଲ୍ୟବୋଧ । ମୁଁ ଆଜି ତମ ପାଖରେ ଧ୍ୱଂସ ହେବା ପାଇଁ ବାଧ୍ୟ । କାହିଁକି ଧ୍ୱଂସ ହେବିନି ? ଜୀବନସାରା ଯାହାକୁ ଗୋଟିଏ ପରିତ୍ୟକ୍ତ ବାର୍ଣ୍ଣି ପାଖରେ ଉପାସ୍ୟା କରିବାକୁ ପଡ଼ିଛି ଏ ଜଗତର କଲ୍ୟାଣ ପାଇଁ...କ'ଣ ଅଧିକାର ଅଛି ତା'ର ଉଦ୍ଦେଶ୍ୟକୁ ତମେ ଭ୍ରଷ୍ଟ କରିବା ପାଇଁ ?

ମୀନା ।। ଆମେ ତମର କିଛି କ୍ଷତି କରିନାହୁଁ ? ମୁକ୍ତିର ମାନଚିତ୍ରଟିଏ ଧରି ଆନନ୍ଦର ନୂତନ ମହାଦେଶଟିଏ ଆବିଷ୍କାର କରିବା ପାଇଁ ଆମେ ଆସିଥିଲୁ ।

ମେଘନାଦ ।। ମୁଁ ସେଇ ନୂତନ ମହାଦେଶ ତମକୁ ଦେଖାଇ ଦେବି ଆଉ ପରୀକ୍ଷା କରିବି ଆନନ୍ଦ ଖୋଜିବା ପାଇଁ ତମର କେତେ ସାହସ...ମୁଁ ଜାଣିବାପାଇଁ ଚାହୁଁଛି ତମେ ସେଇଠି ପହଁଚି ପାରୁଛ କି ନାହିଁ ।

ବିଶ୍ୱଜିତ୍ ।। ଚାଲନ୍ତୁ !

[ହଠାତ୍ ମେଘନାଦ ସାମନ୍ତ ଶୂନ୍ୟକୁ ଧରିଥିବା ତା'ରେ କାଟିବାକୁ ଲାଗିଲେ ତାଣ୍ଡବ ନୃତ୍ୟ ଭଙ୍ଗୀରେ । ମଞ୍ଚ ଉପରେ ଏକ ଭୟଙ୍କର ବିସ୍ଫୋରଣ ଘଟିଲା... କ୍ଷଣିକ ପାଇଁ ସବୁ ଅନ୍ଧାର ଏବଂ ଆଲୋକ ଜଳି ଉଠିଲା ବେଳକୁ ଏକ "ବାର୍ଣ୍ଣି" ଦୃଶ୍ୟମାନ ହେଲା । ତା'ର ପାଖରେ ଗୋଟିଏ ଗୋଟିଏ ଆଦିମ ଅଧିବାସୀ ଭଳି ଅସ୍ତ୍ରଧରି ଠିଆ ହୋଇଛନ୍ତି ବୁଲ୍‌ବୁଲ୍, ଭିକାରି, ଯୁବନାଶ୍ୱ ଓ ଚନ୍ଦନ ପ୍ରହରାଜ]

ମେଘନାଦ ।। ଆସ । ଏଇ ହେଉଛି ଆନନ୍ଦର ମହାଦେଶକୁ ଯିବା ପାଇଁ ସୁଡ଼ଙ୍ଗ ।

ମୀନା ।। ଆଃ !

ମେଘନାଦ ।। ବୁଲ୍‌ବୁଲ୍ ! ଏମାନଙ୍କୁ ନେଇଯାଅ !

ବିଶ୍ୱଜିତ୍ ।। ଗୋଟିଏ କଦର୍ଯ୍ୟ ପୂତିଗନ୍ଧ ବାହାରୁଛି ତା' ଭିତରୁ ।

ମେଘନାଦ ॥ ତମ ଅତୀତଟା ଏକ ଆବର୍ଜନାର ସୁଡ଼ଙ୍ଗ । ତମ ବର୍ତ୍ତମାନ ଏକ ବିଶ୍ୱାସ-
ହୀନ ଶୂନ୍ୟତାର ସୁଡ଼ଙ୍ଗ...ଏବଂ ଭବିଷ୍ୟତର ଅର୍ଥ ପ୍ରାଚୁର୍ଯ୍ୟ, ଭୋଗଲିପ୍ସା,
ସବୁର ପ୍ରତୀକ ସେଇ ସୁଡ଼ଙ୍ଗ !!

ମୀନା ॥ ରହସ୍ୟ ମସ୍ତ !

ମେଘନାଦ ॥ ତମର ଆନନ୍ଦ ପାଇବା ଯଦି କହାଡ଼ ଆବଶ୍ୟକ ତେବେ ତା' ଭିତରକୁ
ଯାଅ—ତମେ ଦୁହେଁ ଯୌବନର ପାହାଚ ଉପରେ ଠିଆ ହୋଇଛ ।
ତମ ଦେହ ସତେଜ । ଯାଅ . ତା'ର ଭିତରକୁ ଯାଇ ଆନନ୍ଦର
ଫର୍ମୁଲାଟା ଆଣ—

ମୀନା ॥ ହୋଉଥିଲେ...ମୁଁ ଯାଇପାରିବିନି ।

ବିଶ୍ୱଜିତ୍ ॥ ସକାଳ ହେଉ । ଯଦି ସୁବିଧା ହେବ

ମେଘନାଦ ॥ ତମେମାନେ ତା'ଭିତରକୁ ନଗଲା ପର୍ଯ୍ୟନ୍ତ ସକାଳ ହେବ ନାହିଁ । ମୁଁ ତମ
ପାଇଁ ସକାଳର ଆଲୋକକୁ ଏଇଠି ପ୍ରବେଶ କରାଇ ଦେବିନି ହିଁ ।

ବିଶ୍ୱଜିତ୍ ॥ ତା'ହେଲେ ମୁଁ ଯାଇପାରିବିନି ।

ମେଘନାଦ ॥ ମୀନାକ୍ଷି ...ତମେ ?

ମୀନା ॥ ଏ ବୋଉଲ...ସେ ଆନନ୍ଦ କେବଳ ନମିଳୁ ।

ମେଘନାଦ ॥ ତା'ହେଲେ କାହିଁକି ଆସିଥିଲ ଏଇଠିକି ? ଆନନ୍ଦ ଖୋଜିବା କେଉଁଠି
ବାହାନା...ଆମର ପଇସା ଅଛି ବୋଲି ଲୋକଙ୍କୁ ଦେଖେଇବା ପାଇଁ ?
You must go.

ବିଶ୍ୱଜିତ୍ ॥ ଆମେ ଯାଇ ପାରିବୁନି ।

ମେଘନାଦ ॥ You must go !

[ମେଘନାଦ ଦୁଇଥର ତାଳି ମାରିଲେ । ପାଖରେ ଠିଆ
ହୋଇଥିବା ଚରିତ୍ରମାନେ ସେମାନଙ୍କର ଆଦିମ ଅସ୍ତ୍ରଗୁଡ଼ିକୁ
ବିଶ୍ୱଜିତ୍ ଓ ମୀନାଙ୍କ ଆଡ଼କୁ ନେଇ ଆକ୍ରମଣ କରିବା ପାଇଁ
ଗୋଟାଏ ପାଦ ମାଡ଼ି ଆସିଲେ ]

ବିଶ୍ୱଜିତ୍ ॥ ମୀନା !

ମୀନା ॥ କ'ଣ କହୁଛ ?

ବିଶ୍ୱଜିତ୍ ॥ ତା'ର ଭିତରକୁ ଯିବାପାଇଁ ଆମେ ବାଧ୍ୟ ।

ମୀନା ॥ (ଆଖି ଛଳଛଳ) ସତରେ ଆମେ ଯିବା ?

ବିଶ୍ୱଜିତ୍ ।। ଆଉ ଉପାୟ ନାହିଁ ।

ମୀନା ।। ଏତେ ସୁନ୍ଦର ପୃଥିବୀ—ଏତେ ଐଶ୍ୱର୍ଯ୍ୟ—ତାକୁ ଛାଡ଼ି ଚାଲିଯିବା ?

ବିଶ୍ୱଜିତ୍ ।। ସେଇଠି ଆମର ସ୍ୱପ୍ନ ଅଛି । ସବୁ ଅନ୍ୱେଷଣର ସମାପ୍ତି ସେଇଠି ।

ମୀନା ।। କିନ୍ତୁ ଏ ପୃଥିବୀର ମାୟା ମୁଁ ଛାଡ଼ି ପାରୁନ ।

ବିଶ୍ୱଜିତ୍ ।। କେତେ ଆଶା ନେଇ ଆମେ ଏଇଠିକି ଆସିଥିଲେ !

ମୀନା ।। ଅଥଚ ଏଇଠି ଠିକଣାହୀନ ଅବସ୍ଥାରେ ସେଇ ସୁଡ଼ଙ୍ଗ ଭିତରେ ବୁଲିଯିବା ।

ବିଶ୍ୱଜିତ୍ ।। ସବୁଦିନ ପାଇଁ ଏଇ ବାହାର ପୃଥିବୀଠାରୁ ଆମେ ବିଚ୍ଛିନ୍ନ ହୋଇଯିବା ।

ମୀନା ।। ଆଉ ଫେରିବାର ବାଟ ନାହିଁ ।

ବିଶ୍ୱଜିତ୍ ।। ଚିରପଟେ ବନ୍ୟା । ଅଜସ୍ର ସୁଅ—ଅଜସ୍ର, ଭର୍ତ୍ତି ତା'ର ଭିତରେ ଉବୁଟୁବୁ ହେଉଥିବା ।

ମୀନା ।। କୋଉଠି ପହଞ୍ଚିବା ଶେଷରେ ?

ବିଶ୍ୱଜିତ୍ ।। କିଏ ଜାଣିଛି ?

ମୀନା ।। (ମେଘନାଦଙ୍କୁ) ଆମେ ଅସହାୟ ! ଦୟାକରି ଆପଣ ଆମକୁ ରକ୍ଷାକରନ୍ତୁ । ଆମକୁ ଛାଡ଼ିଦିଅନ୍ତୁ—

ମେଘନାଦ ।। କେମିତି ଛାଡ଼ିଦେବି ? ଆନନ୍ଦ ଖୋଜିବାକୁ ଆସିଛ ଯଦି ଏଇଠି ବନ୍ଦୀହେଲ ଯାଅ କୋଉଠା ଆନନ୍ଦ ? ଦେହର ଉପଭୋଗ ନା ତ୍ୟାଗ ? ପାଇବାରେ ଆନନ୍ଦ ଅଛି ନା ସବୁ ଦେଇ ଦେବାରେ ଆନନ୍ଦ ଅଛି ? ଆନନ୍ଦ ବାହାରେ ଅଛି ନା ଭିତରେ ?

ବିଶ୍ୱଜିତ୍ ।। ଏ ପର୍ଯ୍ୟନ୍ତ ଆମେ ଜାଣିନାହୁଁ !

ମୀନା ।। ଏ ପର୍ଯ୍ୟନ୍ତ ଆମେ ଖୋଜୁଛୁ ।

ମେଘନାଦ ।। ଭୁଲ୍ ଯାଗାରେ ଖୋଜୁଛ । ପ୍ରଥମେ ନିଜ ଭିତରେ ଖୋଜ । ନିଜ ଆତ୍ମା ଭିତରକୁ ଯୋଉ ସୁଡ଼ଙ୍ଗ ଅଛି ତା' ଭିତରେ ପଶ ।

ମୀନା ।। ନା... ଆନନ୍ଦ ଆମର ଦରକାର ନାହିଁ ।

ବିଶ୍ୱଜିତ୍ ।। ଆପଣ ଆମକୁ ବାବାଜୀ ହେବା ପାଇଁ କହୁଛନ୍ତି !

ମୀନା ।। କେବଳ ଭାରତୀୟ ହେବା ପାଇଁ କହୁଛନ୍ତି—ଗୋଟିଏ ଭୌଗୋଳିକ ସୀମା ଭିତରେ ଆବଦ୍ଧ—କରିଦେବାକୁ ଚାହୁଁଛନ୍ତି । ଆମେ ଆନ୍ତର୍ଜାତିକ ମଣିଷ ।

ବିଶ୍ୱଜିତ　॥ ଆନନ୍ଦ କହିଲେ ଆପଣ ଭାରତରେ ଯାହା ବୁଝୁଛନ୍ତି — ଆମେ ତାହା ବୁଝିବାକୁ ବାଧ୍ୟ ନୋହୁ—

ମେଘନାଦ ॥ ତମେ ଦୁହେଁଜଣ ପ୍ରଳାପ କରୁଛ । ନିଜ ଭିତରେ ଥିବା ସବୁ ଯନ୍ତ୍ର ତମର ପଚି ହଡ଼ି ଗଲେଣି । ବାହାରେ ଯାହା ଦେଖୁଛ—ସବୁ ତମର ଅବକ୍ଷୟର ଚକ୍ର ।

ମୀନା　॥ ପ୍ଲିଜ୍ ! ଆମକୁ ଆଉ ଅଧିକା ସ୍ୱପ୍ନ ଦେଖାନ୍ତୁ ନାହିଁ । ଆମେ ଏଇ ଜରା, ମୃତ୍ୟୁ, ଶୋକ, ଅଶ୍ରୁ ଓ ଯନ୍ତ୍ରଣାର ଜୀବନ ଚାହୁଁ ।

ମେଘନାଦ ॥ ସେ ସମୟ ଅତିକ୍ରାନ୍ତ । ଆଉ ପଛକୁ ଫେରି ଯିବାକୁ ଉପାୟ ନାହିଁ । ଯାଅ...ତମ ପାଇଁ ସେମିତି ତଳକୁ ଖସି ସୁଡ଼ଙ୍ଗ ଭିତରେ ପଶିବା ଛଡ଼ା ଅନ୍ୟଗତି ନାହିଁ । ଚାଲ ! ସେଇଠି ଆନନ୍ଦ ଖୋଜିବ ! ଚାଲ—

[ସେମାନେ ସମସ୍ତେ ବିଭିନ୍ନ ଅସ୍ତ୍ର ଧରି ଆଗେଇ ଆସିଲେ ସେମାନଙ୍କ ମୁହଁରେ ଏକ ନିଷ୍ଠୁର ହସ । ତା'ଭିତରେ ବିଶ୍ୱଜିତ୍ ଓ ମୀନାଙ୍କର ବହିର୍ଦୃଷ୍ଟି କ୍ରମଶଃ ନଷ୍ଟ ହୋଇ ଆସୁଥିଲା ]

ମୀନା　॥ ଆମେ ତଳକୁ ଖସି ଖସି ଯାଉଛୁ ।

ବିଶ୍ୱଜିତ୍　॥ ମତେ ବି ସେମିତି ତଳକୁ ଖସି ପଡ଼ିଲା ପରି ଲାଗୁଛି ।

ମେଘନାଦ ॥ ତଳକୁ ଖସି ଖସି ସବୁଠୁ ତଳ ସ୍ତରରେ ପହଞ୍ଚି ଯାଅ । ସେଇଠି ଗୋଟାଏ ଚକ୍ର ଦେଖିବ । ମୂଳାଧାର ଚକ୍ର !

ମୀନା　॥ ଉଃ ! ଗୋଟାଏ ଦୁର୍ଗନ୍ଧି ପୂତି ଗନ୍ଧ ବାହାରୁଛି ।

ବିଶ୍ୱଜିତ୍　॥ ମୀନା, ତମେ ଯେଉଁ ସେଣ୍ଟ୍‌ଟା ନ୍ୟୁୟର୍କରୁ କିଣିଥିଲ—ସେଇଟା ନେଇ ଚାଲିଆସ—

ମେଘନାଦ ॥ ଷ୍ଟୁପିଡ୍ ଅଫ୍ ! ନିଜ ଭିତରଟାକୁ ଦେଖିବାକୁ ଘୃଣା ଲାଗୁଛି ? (ହସିଲେ) ବର୍ତ୍ତମାନ ତମ ଦୁହେଁଜଣଙ୍କୁ ତା' ଭିତରେ ପଶିବାକୁ ପଡ଼ିବ ।

ମୀନା　॥ Me ! I can't go into that hell...ମୁଁ ସେ ନର୍କ ଭିତରକୁ ଯାଇପାରିବିନି ! ତମେ ଯାଅ ବିଶ୍ୱଜିତ୍ !

ବିଶ୍ୱଜିତ୍　॥ ସକାଳ ହେଲେ ଟ୍ରାଇ କରିବି । ବର୍ତ୍ତମାନ କିଛି ଦେଖାଯାଉନି ।

ମେଘନାଦ ॥ ତା' ହେଲେ ଆସିଥିଲ କାହିଁକି ? ବର୍ତ୍ତମାନ ସେ ସୁଡ଼ଙ୍ଗ ଭିତରର ମୂଳାଧାର ପର୍ଯ୍ୟନ୍ତ ଯିବାପାଇଁ ତମେ ବାଧ୍ୟ ;

ବିଶ୍ୱଜିତ୍ ।। ମୀନା !

ମୀନା ।। ସତରେ ଆମେ ଯିବା ? (କଣ୍ଠରେ ଦରଦ)

ବିଶ୍ୱଜିତ୍ ।। ଆଉ ଉପାୟ ନାହିଁ ।

ମୀନା ।। ଏତେ ସୁନ୍ଦର ପୃଥିବୀ...ଏତେ ଐଶ୍ୱର୍ଯ୍ୟ...ତାକୁ ଛାଡ଼ି ଚାଲିଯିବା ?

ବିଶ୍ୱଜିତ୍ ।। ଏ ପୃଥିବୀର ମାୟା ମୁଁ ଛାଡ଼ି ପାରୁନି !

ମୀନା ।। କେତେ ଆଶା ନେଇ ଏଇଠିକି ଆସିଥିଲେ । ଅଥଚ ଏଇଠି ଗୋଟାଏ ସୁଡ଼ଙ୍ଗ ଭିତରେ ନିଜକୁ ନିଶ୍ଚିହ୍ନ କରିଦେବାକୁ ପଡ଼ିବ ।

ବିଶ୍ୱଜିତ୍ ।। ସ୍ୱର୍ଣ୍ଣପଟେ ବନ୍ୟା...ବିଭିନ୍ନ କାମନାର ସ୍ରୋତ...ଅଜସ୍ର ଭଉଁରୀ .. ତା'ର ଭିତରେ ଉବୁଟୁବୁ ହେଉଥିବା ?

ମୀନା ।। କୋଉଠି ପହଞ୍ଚିବା ଶେଷରେ ?

ବିଶ୍ୱଜିତ୍ ।। କିଏ ଜାଣିଛି !

ମୀନା ।। ଦେଖନ୍ତୁ—ଆମେ ଅସହାୟ ! କାମନାର ଅରମା ଢେଉଁ ଢେଉଁ ପାଦ ଅଳି ଗଲଣି । ଆମେ ଆଉ ଆନନ୍ଦର ସୀମାରେଖା ସ୍ପର୍ଶ କରିପାରୁନୁ । ଆମକୁ ଛୁଡ଼ିଦିଅନ୍ତୁ ।

ବିଶ୍ୱଜିତ୍ ।। ଆପଣଙ୍କ ପାଖରେ ଆମେ କୃତଜ୍ଞ ରହିବୁ ! ତଳକୁ ଯିବା ଆମର ଦରକାର୍ ନାହିଁ ।

ମେଘନାଦ ।। ମୂର୍ଖ ! ଥରେ ତଳକୁ ଗଲେ ମୂଳାଧାରକୁ ଛୁଇଁ ପୁଣି ତମେ ଉପରକୁ ଉଠିବ, ତମ ଦେହମାରେ ପୁଣି ଏକ ଶିହରଣ ଜାଗ୍ରତ ହବ । ମୁଁ ଗ୍ୟାରେଣ୍ଟି ଦଉଚି ।

ମୀନା ।। (ଝଙ୍କାର ଭରି) ନା—ସେ ଶିହରଣ ଆମର ଦରକାର ନାହିଁ । ସେ ଆନନ୍ଦ ଆମର ଦରକାର ନାହିଁ ।

ମେଘନାଦ ।। ଦରକାର ।

ଏ ପୃଥିବୀ ଅମୃତମୟ ହେବା ଦରକାର ।

ମଣିଷର ଶିରାରେ ବିଷ ନୁହେଁ ଅମୃତ ଝରିବା ଦରକାର ।

ବୃକ୍ଷଲତା ଶୂନ୍ୟ ଏଇ ପୃଥିବୀ ପୁନରାୟ ସବୁଜ ହେବା ଦରକାର ।

ଆକାଶରୁ ଆନନ୍ଦର ବର୍ଷା ହେବ ।

ଗାଈର ସ୍ତନରୁ ଅମୃତ ଝରିବ ।

ମଣିଷର ମନରୁ ଅମୃତ ଝରିବ ।

ସେଇ ଆନନ୍ଦର ଅମୃତ ନଦୀ ହୋଇ ବହିଯିବ ସେଇ ସୁଡ଼ଙ୍ଗ ଭିତରୁ ।

ଏ ଦାୟିତ୍ୱ ତମ ଉପରେ ।

ଆସ ବିଶ୍ୱଜିତ୍ ! ଆସ ମୀନା !

ବିଶ୍ୱଜିତ୍ ।। ପ୍ଲିଜ୍ ଆମକୁ ସାଧାରଣ ମଣିଷ ହୋଇ ବଞ୍ଚିବାକୁ ଦିଅନ୍ତୁ !

ମେଘନାଦ ।। ସ୍ପାଚୁଆର ମୁଖା ଖୋଲିଦିଅ । ନିଜ ଭିତରେ ପଶି ପ୍ରଥମେ ନିଜକୁ ଦେଖ । ଯାଅ—ଯାଅ କହୁଚି—ଆଉ ପଛକୁ ଫେରିବାର ଉପାୟ ନାହିଁ...ଯାଅ ।

ମୀନା ।। (ତଳକୁ ଆସିବାର ଅନୁଭୂତି) ଆଃ...ଆଃ !

ବିଶ୍ୱଜିତ୍ ।। ଆଃ !

ମେଘନାଦ ।। ଯାଅ—ଆହୁରି ତଳକୁ । କେନ୍ଦ୍ର ପାଖକୁ ଯାଅ—କ'ଣ ଦେଖୁଚ ବାହାରେ ଥିବା ଲୋକମାନଙ୍କୁ କଣେଇଦିଅ —

ମୀନା ।। ଆଃ !

[ଏଇଥର ମୀନାର ସ୍ୱରରେ ଯନ୍ତ୍ରଣା ନଥିଲା । ଏଇ ଅର୍ଦ୍ଧ ମାନବିକ ସ୍ତରରେ, ସହସ୍ରାର ଶୀର୍ଷରେ ଘଟୁଥିବା ସଙ୍ଗମର ଶୀର୍ଷ ଅବସ୍ଥାଟି ଦୈହିକ ସଙ୍ଗମର ଚରମ ଆନନ୍ଦ ଭଳି ଅଭିନେତା ଅଭିନେତ୍ରୀ ପ୍ରକାଶ କରିବେ ।

କ୍ରମଶଃ ବିଶ୍ୱଜିତ୍ ଓ ମୀନାଙ୍କର ତଳକୁ ଆସିବାର ଏଇ ଅବସ୍ଥାରେ ପଛରୁ ଶୁଭିବ ଗୀତ :]

ଯୋଜନ ଯୋଜନ ଆକାଶ ସେପାରେ
ଅଛି ଏକ ସ୍ୱପ୍ନ ଦେଶ
ଆଖିରେ ଆଖିରେ ଲହରୀ ସେଇଠି
ପରଶେ ମଳୟ ହାସ
ଗଛରେ ଗଛରେ ବକଣି ଉଠୁଚି
ନୀଳ ମରକତ ଫଳ
ମେଘରେ ମେଘରେ ଜୋଛନା ଢାଳୁଚି
ନୂଆ ଜୀବନର ସୁର...।
ଆରେ ଆରେ ଆରେ
ଅଂଧ ଗୁହାର ପକ୍ଷୀମାନେ
ଭଂଗା ଡେଣାର ପକ୍ଷୀମାନେ
ଡ଼ହକ ବକୁଳ ପକ୍ଷୀମାନେ
ପାହୁଲ ପାହୁଲ ସ୍ୱପ୍ନର ଖବର ଶୁଣ
ଏଇ ଅବର ଗାଧୁଆ ସକାଳ ଖବର ଶୁଣ ।

। ଗୀତ ଶେଷର ସମବେତ ଗୁଞ୍ଜନର ସ୍ୱର କ୍ରମଶଃ
କମି କମି ଆସିଲା ବେଳକୁ ଗୋଟାଏ ଦ୍ରୁତଗାମୀ
ଟ୍ରେନର ସ୍ୱର ମାଡ଼ି ଚାଲିଯିବ ତା' ଉପରେ ।
ନୀରବତା ।
ସକାଳର କାକଳୀ । ବଂଶୀର ସ୍ୱର ଟିଏ ।
ତା'ଶ ଭିତରୁ ଶୁଭୁଥିଲା ଫଟିକ ଦାସଙ୍କ ସ୍ୱର ।
ବିଶ୍ୱଜିତ ଓ ମୀନା ସେଇଠି ନଥିଲେ ।
ଫଟିକ ଦାସ ଟିକଟ ବିକୁଥିଲେ... ]

ଫଟିକ ।। ଟିକେଟ୍...ଟିକେଟ୍ ! ନନ୍ଦନକାନନ ପାଇଁ ଆଡ଼ଭାନ୍ସ ଟିକେଟ୍ । ଆସନ୍ତୁ...ନନ୍ଦନକାନନ...ପାରାଡ଼ାଇଜ...ସିଟ ପାଇଲେ ବସ୍ ଛାଡ଼ିବ... ଲକ୍ ଜୁଷ୍ଟ କୋର୍

[ ଚାଲି ଯାଉ ଯାଉ ]

ନାଃ ! ସମସ୍ତେ ଅଂଧ ଅଂଧମାନଙ୍କ ଭାଗ୍ୟରେ ନନ୍ଦନକାନନ ଦେଖିବ ସମ୍ଭବ ନୁହେଁ ।

[ଚାଲିଗଲେ । ମଞ୍ଚ ଖାଲି ରହିବ ।
ପରଦା ପଡ଼ିବା ଦରକାର ନାହିଁ]



ମୁଦ୍ରଣ : ମନମୋହନ ଟ୍ରେଡ଼ର୍ସ, ବ୍ରହ୍ମପୁର—୨